ଦାଦା ଭଗବାନ କଥିତ

# ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ...



ଯେଉଁଠି ଜନ୍ମ ଅଛି, ସେଠି ମୃତ୍ୟୁ ନିଶ୍ଚିତ ଅଛି ।
ଜନ୍ମ ମରଣ ଆତ୍ମାର ନୁହେଁ, ଆତ୍ମା ପରମାନେଣ୍ଟ ଅଟେ ।

Oriya

ଦାଦା ଭଗବାନ କଥିତ

# ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ...

ମୂଳ ଗୁଜରାଟୀ ସଙ୍କଳନ : ଡା. ନୀରୂବେନ ଅମୀନ
ଅନୁବାଦ : ମହାତ୍ମାଗଣ

# ତ୍ରିମନ୍ତ୍ର







ନମୋ ଅରିହଂତାଣଂ
ନମୋ ସିଦ୍ଧାଣଂ
ନମୋ ଆୟରିୟାଣଂ
ନମୋ ଉବଜ୍ଝାୟାଣଂ
ନମୋ ଲୋଏ ସବ୍ବସାହୁଣଂ
ଏସୋ ପଞ୍ଚ ନମୁକ୍କାରୋ,
ସବ୍ବ ପାବପ୍ପଣାସଣୋ
ମଙ୍ଗଲାଣଂ ଚ ସବ୍ବେସିଂ,
ପଢମଂ ହବଇ ମଙ୍ଗଲମ୍ ॥୧॥
ॐ ନମୋ ଭଗବତେ ବାସୁଦେବାୟ ॥୨॥
ॐ ନମଃ ଶିବାୟ ॥୩॥
॥ ଜୟ ସଚ୍ଚିଦାନନ୍ଦ ॥



## 'ଦାଦା ଭଗବାନ' କିଏ ?

ଜୁନ୍ ୧୯୫୮ର ଏକ ସନ୍ଧ୍ୟା, ସମୟ ପାଖାପାଖି ଛ'ଟା, ଭିଡ଼ରେ ଭରା ସୁରଟ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୁଲ୍‌ଜୀଭାଇ ପଟେଲ୍ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୀତିରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର 'ଦାଦା ଭଗବାନ' ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱ ଦର୍ଶନ ହେଲା । 'ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ'ଣ ? ମୁକ୍ତି କ'ଣ ?' ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସଂପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଳ୍‌ଜୀଭାଇ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ'ର ପାଟୀଦାର, କଣ୍ଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନ ପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ୍ ବିନା କ୍ରମରେ ଏବଂ କ୍ରମ ଅର୍ଥାତ୍ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ୍ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ 'ଦାଦା ଭଗବାନ କିଏ ?'ର ରହସ୍ୟ ବତାଇବାକୁ ଯାଇ କହୁଥିଲେ ଯେ, ''ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ 'ଏ.ଏମ୍. ପଟେଲ୍' ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ 'ଦାଦା ଭଗବାନ' ଅଟନ୍ତି । ଦାଦା ଭଗବାନ ତ' ଚଉଦ ଲୋକର ନାଥ ଅଟନ୍ତି । ସେ ଆପଣଙ୍କ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ଆପଣଙ୍କ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ 'ଏଠାରେ' ମୋ ଭିତରେ ସଂପୂର୍ଣ୍ଣ ରୂପେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।''

'ବ୍ୟାପାରରେ ଧର୍ମ ରହିବା ଉଚିତ୍, ଧର୍ମରେ ବ୍ୟାପାର ନୁହେଁ', ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ ସେ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

# ନିବେଦନ

ଆତ୍ମବିଜ୍ଞାନୀ ଶ୍ରୀ ଅମ୍ବାଲାଲ ମୂଳଜୀଭାଇ ପଟେଲ, ଯାହାଙ୍କୁ ଲୋକେ 'ଦାଦା ଭଗବାନ' ନାମରେ ମଧ୍ୟ ଜାଣନ୍ତି, ତାଙ୍କ ଶ୍ରୀମୁଖରୁ ଅଧ୍ୟାତ୍ମ ତଥା ବ୍ୟବହାର ଜ୍ଞାନ ସମ୍ବନ୍ଧୀ ଯେଉଁ ବାଣୀ ବାହାରିଛି, ତାହାକୁ ରେକର୍ଡ କରାଯାଇଥିଲା । ସେହି ବାଣୀର ସଙ୍କଳନ ତଥା ସମ୍ପାଦନ ହୋଇ, ତାହା ପୁସ୍ତକ ରୂପରେ ପ୍ରକାଶିତ ହେଲା । ପ୍ରସ୍ତୁତ ପୁସ୍ତକ ମୂଳ ଗୁଜରାଟୀ ପୁସ୍ତକର ଅନୁବାଦ ଅଟେ ।

ପ୍ରସ୍ତୁତ ଅନୁବାଦରେ ଏହା ବିଶେଷ ଧ୍ୟାନ ରଖାଯାଇଛି ଯେ, ପାଠକଙ୍କୁ ଦାଦାଶ୍ରୀଙ୍କର ହିଁ ବାଣୀ ଶୁଣାଯାଉଛି, ଏପରି ଅନୁଭବ ହେଉ, ଯେଉଁ କାରଣରୁ ବୋଧହୁଏ କିଛି ଜାଗାରେ ଅନୁବାଦର ବାକ୍ୟ ରଚନା ଓଡ଼ିଆ ବ୍ୟାକରଣ ଅନୁସାରେ ତ୍ରୁଟିପୂର୍ଣ୍ଣ ଲାଗିପାରେ, କିନ୍ତୁ ଯଦି ଏଠାରେ ଆଶୟ(ହେତୁ)କୁ ବୁଝି ପଢ଼ାଯିବ, ତେବେ ଅଧିକ ଲାଭକାରୀ ହେବ ।

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି କିନ୍ତୁ ଦାଦାଶ୍ରୀଙ୍କ ଆତ୍ମଜ୍ଞାନର ପ୍ରକୃତ ଆଶୟ, ଯେମିତିକୁ ସେମିତି(as it is), ଆପଣଙ୍କୁ ଗୁଜରାଟୀ ଭାଷାରେ ହିଁ ଅବଗତ ହେବ । ମୂଳ ଗୁଜରାଟୀ ଶବ୍ଦ ଯାହାର ଓଡ଼ିଆ ଅନୁବାଦ ଉପଲବ୍ଧ ନାହିଁ, ତାହା ଇଟାଲିକ୍ସ ରେ ଲେଖାଯାଇଛି । ଜ୍ଞାନର ଗଭୀରତାକୁ ଯିବାର ଥିବ, ଜ୍ଞାନର ପ୍ରକୃତ ମର୍ମ ଯଦି ବୁଝିବାର ଥିବ, ତେବେ ତାହା ଗୁଜରାଟୀ ଭାଷା ଶିଖି, ମୂଳ ଗୁଜରାଟୀ ଗ୍ରନ୍ଥ ପଢ଼ିବା ଦ୍ୱାରା ହିଁ ସମ୍ଭବ । ତଥାପି ଏହି ବିଷୟ ସମ୍ବନ୍ଧୀୟ ଆପଣଙ୍କର ଯଦି କୌଣସି ବି ପ୍ରଶ୍ନ ଥିବ ତେବେ ଆପଣ ପ୍ରତ୍ୟକ୍ଷ ସତ୍‌ସଙ୍ଗରେ ଆସି ସମାଧାନ ପ୍ରାପ୍ତ କରିପାରିବେ ।

ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜରାଟୀ ଏବଂ ଇଂରାଜୀ ଶବ୍ଦ ଯେମିତିକୁ ସେମିତି ରଖାଯାଇଛି । ପ୍ରସ୍ତୁତ ପୁସ୍ତକର ଶେଷରେ କିଛି ଶବ୍ଦର ଓଡ଼ିଆ ଅର୍ଥ ଲେଖାଯାଇଛି ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।

# ସମ୍ପାଦକୀୟ

ମୃତ୍ୟୁ ମନୁଷ୍ୟକୁ କେତେ ଭୟଭୀତ କରେ, କେତେ ସାରା ଶୋକ ଉତ୍ପନ୍ନ କରାଏ ଏବଂ କେବଳ ଦୁଃଖରେ ହିଁ ବୁଡ଼ାଇ ରଖେ । ଏବଂ ପ୍ରତ୍ୟେକ ମନୁଷ୍ୟକୁ ଜୀବନରେ କାହାର ନା କାହାର ମୃତ୍ୟୁର ସାକ୍ଷୀ ହେବାକୁ ପଡ଼ିଥାଏ । ସେହି ସମୟରେ ମୃତ୍ୟୁ ସମ୍ବନ୍ଧରେ ସହସ୍ର ବିଚାର ଉଠେ ଯେ ମୃତ୍ୟୁର ସ୍ୱରୂପର ବାସ୍ତବିକତା କ'ଣ ହୋଇଥିବ ? ମାତ୍ର ତାହାର ରହସ୍ୟ ନ ଖୋଲିବା କାରଣରୁ ସେ ସେଇଠିକୁ ସେଇଠି ହିଁ ଅଟକି ଯାଏ । ଏହି ମୃତ୍ୟୁର ରହସ୍ୟ ଜାଣିବା ପାଇଁ ଯେ କେହି ବି ଉତ୍ସୁକ ଥାଆନ୍ତି । ଏବଂ ତାହା ବିଷୟରେ ବହୁତ କିଛି ଶୁଣିବାକୁ ଅବା ପଢ଼ିବାକୁ ମିଳେ, ଲୋକଙ୍କଠାରୁ କଥା ଜାଣିବାକୁ ମିଳେ । କିନ୍ତୁ ସେସବୁ କେବଳ ବୁଦ୍ଧିର ଅନୁମାନ ହିଁ ଅଟେ ।

ମୃତ୍ୟୁ କ'ଣ ହୋଇଥିବ ? ମୃତ୍ୟୁ ପୂର୍ବରୁ କ'ଣ ହେଉଥିବ ? ମୃତ୍ୟୁ ସମୟରେ କ'ଣ ହେଉଥିବ ? ମୃତ୍ୟୁ ପରେ କ'ଣ ? ମୃତ୍ୟୁର ଅନୁଭବ ବତାଇବାବାଲା କିଏ ? ଯାହାର ମୃତ୍ୟୁ ହୁଏ, ସେ ନିଜର ଅନୁଭବ କହିପାରେ ନାହିଁ । ଯିଏ ଜନ୍ମ ପାଏ, ସେ ନିଜର ପୂର୍ବର ଅବସ୍ଥା ସ୍ଥିତି ଜାଣେ ନାହିଁ । ଏହିପରି ମୃତ୍ୟୁ ପୂର୍ବରୁ, ମୃତ୍ୟୁ ସମୟରେ ଏବଂ ମୃତ୍ୟୁ ପରେ କେଉଁ ଦଶାରେ ଅତିବାହିତ କରିବାକୁ ପଡ଼େ, ତାହାର ରହସ୍ୟ, ରହସ୍ୟରେ ହିଁ ରହିଯାଏ । ଦାଦାଶ୍ରୀ ନିଜ ଜ୍ଞାନରେ ଦେଖି ଏ ସମସ୍ତ ରହସ୍ୟ, ଯେମିତିକୁ ସେମିତି(as it is), ଯଥାର୍ଥ ରୂପରେ ଖୋଲା କରିଛନ୍ତି, ଯାହା ଏଠାରେ ସଙ୍କଳିତ ହୋଇଛି ।

ମୃତ୍ୟୁର ରହସ୍ୟ ବୁଝିନେବା କ୍ଷଣି ମୃତ୍ୟୁର ଭୟ ଚାଲିଯାଏ !

ପ୍ରିୟ ସ୍ୱଜନଙ୍କ ମୃତ୍ୟୁ ସମୟରେ ଆମକୁ କ'ଣ କରିବା ଉଚିତ ? ଆମର ପ୍ରକୃତ କର୍ତ୍ତବ୍ୟ କ'ଣ ? ତା'ର ଗତି କିଭଳି ସୁଧାରିବା ? ପ୍ରିୟ ସ୍ୱଜନଙ୍କ ମୃତ୍ୟୁ ପରେ ଆମକୁ କ'ଣ କରିବା ଉଚିତ ? ଆମେ କେଉଁ ସମଝ(ଜ୍ଞାନ) ଦ୍ୱାରା ସମତାରେ ରହିବା ?

ଆଉ ଯାହା ବି ଲୋକମାନ୍ୟତା ସବୁ ଅଛି, ଯେପରିକି ଶ୍ରାଦ୍ଧ, ତେର ଦିନିଆ, ବ୍ରାହ୍ମଣ ଭୋଜନ, ଦାନ, ଗରୁଡ଼ ପୁରାଣ ଇତ୍ୟାଦି, ସେସବୁର ସତ୍ୟତା କେତେ ?

ମରିବା ବାଲାକୁ କ'ଣ କ'ଣ ପହଞ୍ଚେ ? ଏସବୁ କରିବା ଉଚିତ ନା ନୁହେଁ ? ମୃତ୍ୟୁ ପରର ଗତିର ସ୍ଥିତି, ଇତ୍ୟାଦି ସମସ୍ତ ରହସ୍ୟ ଏଠାରେ ସ୍ପଷ୍ଟ ହୁଏ ।

ଏପରି ଭୟଭୀତ କରୁଥିବା ମୃତ୍ୟୁର ରହସ୍ୟ ଯେବେ ଜଣା ପଡ଼ିଯାଏ, ସେତେବେଳେ ମଣିଷକୁ ଏଭଳି ପ୍ରସଙ୍ଗରେ, ତା'ର ଜୀବନକାଳର ବ୍ୟବହାରରେ ଏଭଳି ଅବସରରେ ନିଶ୍ଚିତ ରୂପେ ସାନ୍ତ୍ୱନା ପ୍ରାପ୍ତ ହୁଏ ।

'ଜ୍ଞାନୀ ପୁରୁଷ' ଅର୍ଥାତ, ଯିଏ ଦେହରୁ, ଦେହର ସମସ୍ତ ଅବସ୍ଥାରୁ, ଜନ୍ମରୁ, ମୃତ୍ୟୁରୁ ଅଲଗା ହିଁ ରହିଛନ୍ତି । ଏମାନଙ୍କର ନିରନ୍ତର ଜ୍ଞାତା-ଦ୍ରଷ୍ଟା ରୁହନ୍ତି, ଏବଂ ଅଜନ୍ମ-ଅମର ଆତ୍ମାର ଅନୁଭବ ଦଶାରେ ବିଚରନ୍ତି ସେ ! ! ଜୀବନ ପୂର୍ବର, ଜୀବନ ପଶ୍ଚାତ୍ ଏବଂ ଦେହର ଅନ୍ତିମ ଅବସ୍ଥାରେ ଅଜନ୍ମ-ଅମର, ଏଭଳି ଆତ୍ମାର ସ୍ଥିତିର ସତ୍ୟତା କ'ଣ, ଏହା ଜ୍ଞାନୀପୁରୁଷ ଜ୍ଞାନଦୃଷ୍ଟିରେ ଖୋଲାଖୋଲି କହି ଦିଅନ୍ତି ।

ଆତ୍ମା ତ ସର୍ବଦା ଜନ୍ମ-ମୃତ୍ୟୁର ପରିସରରୁ ବାହାରେ ହିଁ ଅଟେ, ସେ ତ କେବଳଜ୍ଞାନ ସ୍ୱରୁପ ହିଁ ଅଟେ । କେବଳ ଜ୍ଞାତା-ଦ୍ରଷ୍ଟା ହିଁ ଅଟେ । ଜନ୍ମ-ମୃତ୍ୟୁ ଆତ୍ମାର ନୁହେଁ ! ତଥାପି ବୁଦ୍ଧି ଦ୍ୱାରା ଜନ୍ମ-ମୃତ୍ୟୁର ପରମ୍ପରା ସର୍ଜିତ ହୁଏ, ଯାହା ମନୁଷ୍ୟର ଅନୁଭବରେ ଆସେ । ସେତେବେଳେ ସ୍ୱାଭାବିକ ରୂପରେ ମୂଳ ପ୍ରଶ୍ନ ସାମ୍ନାକୁ ଆସେ ଯେ ଜନ୍ମ-ମୃତ୍ୟୁ କିଭଳି ହୁଏ ? ସେ ସମୟରେ ଆତ୍ମା ଏବଂ ସାଥେ-ସାଥେ କେଉଁ କେଉଁ ବସ୍ତୁ ସବୁ ଥାଏ ? ସେ ସମସ୍ତଙ୍କର କ'ଣ ହୁଏ ? ପୁନର୍ଜନ୍ମ କାହାର ହୁଏ ? କିପରି ହୁଏ ? ଆବାଗମନ କାହାର ? କାର୍ଯ୍ୟରୁ କାରଣ ଏବଂ କାରଣରୁ କାର୍ଯ୍ୟର ପରମ୍ପରାର ସର୍ଜନ କିପରି ହୁଏ ? ତାହା କିପରି ଅଟକିବ ? ଆୟୁଷର ବନ୍ଧ କିପରି ପଡ଼େ ? ଆୟୁଷ କେଉଁ ଆଧାରରେ ନିଶ୍ଚିତ ହୁଏ ? ଏଭଳି ସନାତନ ପ୍ରଶ୍ନର ସଟୋଟ-ସମାଧାନକାରୀ, ବୈଜ୍ଞାନିକ ସମଝ(ଦୃଷ୍ଟି) ଜ୍ଞାନୀପୁରୁଷଙ୍କ ବ୍ୟତୀତ କିଏ ଦେଇ ପାରିବ ?

ଆଉ ତାହାଠୁ ବି ଆଗକୁ, ଭିନ୍ନ-ଭିନ୍ନ ଗତିରେ ପ୍ରବେଶର କାନୁନ୍ କ'ଣ ହୋଇଥିବ ? ଆତ୍ମହତ୍ୟାର କାରଣ ଏବଂ ପରିଣାମ କ'ଣ ? ପ୍ରେତଯୋନି କ'ଣ ହୋଇଥିବ ? ଭୂତଯୋନି ଅଛି ? କ୍ଷେତ୍ର ପରିବର୍ତ୍ତନର ନିୟମ କ'ଣ ? ଭିନ୍ନ ଭିନ୍ନ

ଗତିର ଆଧାର କ'ଣ ? ଗତି ସବୁରୁ ମୁକ୍ତି କିଭଳି ମିଳେ ? ମୋକ୍ଷଗତି ପ୍ରାପ୍ତ କରୁଥିବା ଆତ୍ମା କୁଆଡ଼େ ଯାଏ ? ସିଦ୍ଧଗତି କ'ଣ ? ଏ ସମସ୍ତ କଥା ଏଠାରେ ସ୍ପଷ୍ଟ ହୁଏ ।

ଆତ୍ମ-ସ୍ୱରୂପ ଏବଂ ଅହଂକାର-ସ୍ୱରୂପର ସୂକ୍ଷ୍ମ ସମଝ ଜ୍ଞାନୀଙ୍କ ବ୍ୟତୀତ କେହି ବୁଝାଇ ପାରିବେ ନାହିଁ ।

ମୃତ୍ୟୁପରେ ପୁଣି ମରିବାକୁ ନ ପଡ଼େ, ପୁଣି ଜନ୍ମ ନେବାକୁ ନ ପଡ଼େ, ସେହି ଦଶାକୁ ପ୍ରାପ୍ତ କରିବା ସମ୍ବନ୍ଧୀୟ ସମସ୍ତ ସ୍ପଷ୍ଟତା, ଏଠାରେ ସୂକ୍ଷ୍ମ ରୂପରେ ସଙ୍କଳିତ ହୋଇଛି, ଯାହା ପାଠକଙ୍କୁ ସଂସାର ବ୍ୟବହାର ଏବଂ ଆଧାତ୍ମିକ ପ୍ରଗତି ପାଇଁ ହିତକାରୀ ହେବ ନିଶ୍ଚୟ ।

**- ଡା. ନୀରୂବେନ ଅମୀନଙ୍କ ଜୟ ସଚ୍ଚିଦାନନ୍ଦ**

# ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ...

## ମୁକ୍ତି, ଜନ୍ମ-ମରଣରୁ

**ପ୍ରଶ୍ନକର୍ତ୍ତା :** ଜନ୍ମ-ମରଣର ଝଂଝଟ୍‌ରୁ କିପରି ଛୁଟିବୁ(ମୁକୁଳିବୁ) ?

**ଦାଦାଶ୍ରୀ :** ବହୁତ ବଢ଼ିଆ ପଚାରିଲ । ତୁମ ନାଁ କ'ଣ ?

**ପ୍ରଶ୍ନକର୍ତ୍ତା :** ଚନ୍ଦୁଭାଇ ।

**ଦାଦାଶ୍ରୀ :** ସତରେ ଚନ୍ଦୁଭାଇ ଅଟ ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ଚନ୍ଦୁଭାଇ ତ ତୁମ ନାଁ ଅଟେ, ନୁହେଁ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ତେବେ ତୁମେ କିଏ ? ତୁମ ନାଁ ଚନ୍ଦୁଭାଇ, ଏହା ଆମେ ସମସ୍ତେ ମାନୁଛୁ, କିନ୍ତୁ ତୁମେ କିଏ ?

**ପ୍ରଶ୍ନକର୍ତ୍ତା :** ସେଥିପାଇଁ ତ ଆସିଛି ।

**ଦାଦାଶ୍ରୀ :** ତାହା ଜାଣିନେବା, ତେବେ ଜନ୍ମ-ମରଣର ଝଂଝଟ୍ ଛୁଟିବ ।

ଏବେ ତ ମୂଳତଃ ସେ ଚନ୍ଦୁଭାଇଙ୍କ ନାମରେ ହିଁ ଏ ସବୁ ଚାଲୁଅଛି ନା ? ସବୁକିଛି ଚନ୍ଦୁଭାଇଙ୍କ ନାମରେ ?! ଆରେ, ଧୋକା ହୋଇଯିବ ଏ ତ ! ତୁମ ନାମରେ କିଛି ତ ରଖିବାର ଥିଲା ନା ?

କୋକେଇ ମାନେ ପ୍ରକୃତିର ଜବତ ! କିଭଳି ଜବତ ? ତେବେ କହିବା ନାମ

ସହ ଯେଉଁ ବ୍ୟାଙ୍କ ବାଲାନ୍ସ ଥିଲା, ତାହା ଜବତ ହୋଇଗଲା, ପିଲାମାନେ ଜବତ ହୋଇଗଲେ, ବଙ୍ଗଳା ଜବତ ହୋଇଗଲା । ପୁଣି ଏ କପଡ଼ା, ଯାହା ନାମ ସହ ଥିଲା, ତାହା ମଧ୍ୟ ଜବତ ହୋଇଗଲା! ସବୁକିଛି ଜବତ ହୋଇଗଲା । ତେବେ କୁହେ, 'ସାହେବ, ଏବେ ମୋତେ ସେଠାକୁ ସାଥିରେ ନେଇ ଯିବା ପାଇଁ କ'ଣ ରହିଲା?' ତେବେ କହିବା, ଲୋକଙ୍କ ସହିତ ଯେଉଁ ହିସାବ ବାନ୍ଧିଛ, ସେତିକି ନେଇଯାଅ!' ଅର୍ଥାତ ଏ ନାମବାଲା ସବୁ ଜବତ ହେବ । ଏଣୁ ଆମକୁ ଆମ ନିଜ ମଙ୍ଗଳ ପାଇଁ କିଛି କରିବା ଉଚିତ ନା? କରିବା ଉଚିତ ନୁହେଁ?

## ପଠାଅ, ପରଜନ୍ମର ପୁଟୁଳି

ଯିଏ ଆମର ସମ୍ପର୍କୀୟ ହୋଇ ନଥିବେ, ଏପରି ଅନ୍ୟ ଲୋକଙ୍କୁ ଯଦି କିଛି ସୁଖ ଦେଇଥିବ, ଚକ୍କର ଲଗାଇ ହେଉ ବା ଅନ୍ୟ କିଛି ବି ତାଙ୍କୁ ଦେଇଥିବ ତେବେ ତାହା 'ସେଠି' ପହଞ୍ଚିବ । ସମ୍ପର୍କୀୟ ନୁହେଁ, କିନ୍ତୁ ଅନ୍ୟ ଲୋକଙ୍କ ପାଇଁ । ପୁଣି ଏଠି ଯଦି ଲୋକଙ୍କୁ ଔଷଧର ଦାନ ଦେଇଥିବ, ଔଷଧଦାନ, ଆଉ ଆହାରଦାନ ଦେଇଥିବ, ପୁଣି ଜ୍ଞାନଦାନ ଦେଇଥିବ ଏବଂ ଅଭୟଦାନ ସେସବୁ ଦେଇଥିବ ତେବେ ସେଠାକୁ ସବୁ ଆସିବ । ଏଥିରୁ କିଛି ଦେଉଛ ନା ଏମିତି ସବୁ? ଖାଇ ଯାଉଛ?

ଯଦି ସାଥିରେ ନେଇ ଯାଇ ପାରୁଥାନ୍ତେ ତେବେ ଏଠି ତ ଏମିତି ବି ଅଛନ୍ତି ଯେ ତିନି ଲକ୍ଷର କରଜ କରି ଯିବେ! ଧନ୍ୟ ଅଟନ୍ତି ନା!! ଜଗତ ହିଁ ଏପରି ଅଟେ, ଏଣୁ ନେଇ ପାରୁ ନାହାନ୍ତି, ତାହା ହିଁ ଭଲ ।

## ମାୟାର କରାମତି

ଜନ୍ମ ମାୟା କରାଏ, ବାହାଘର ମାୟା କରାଏ, ଏବଂ ମରଣ ବି ମାୟା କରାଏ । ପସନ୍ଦ ହେଉ ଅବା ନାପସନ୍ଦ, କିନ୍ତୁ ଚାରା ନାହିଁ । କିନ୍ତୁ ସର୍ତ୍ତ ଏତିକି ଥାଏ ଯେ ସାମ୍ରାଜ୍ୟ ମାୟାର ନୁହେଁ । ମାଲିକ ତୁମେ ଅଟ । ଅର୍ଥାତ ତୁମ ଇଚ୍ଛା ଅନୁସାରେ ହୋଇଛି । ପୂର୍ବଜନ୍ମର ତୁମର ଯେଉଁ ଇଚ୍ଛା ଥିଲା, ତାହାର ହିସାବ ବାହାରିଲା ଏବଂ ତାହା ଅନୁସାରେ ମାୟା ଚଲାଏ । ପୁଣି ଏବେ ଚିତ୍କାର କରିବା, ତେବେ ଚଳେ ନାହିଁ । ଆମେ ହିଁ ମାୟାକୁ କହିଥିଲେ ଯେ ଏହା ମୋର ହିସାବ-କିତାବ ଅଟେ ।

## ଜୀବନ ଏକ ଜେଲ୍

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ହିସାବରେ ଜୀବନ କ'ଣ ?

**ଦାଦାଶ୍ରୀ :** ମୋ ହିସାବରେ ଜୀବନ, ତାହା ଜେଲ୍ ଅଟେ, ଜେଲ୍ ! ଚାରି ପ୍ରକାରର ଜେଲ୍ ଅଛି ।

ପ୍ରଥମ ନଜରବନ୍ଦୀ ଅଟେ । ଦେବଲୋକେ ନଜରବନ୍ଦୀରେ ଅଛନ୍ତି । ଏ ମନୁଷ୍ୟ ସରଳ ବନ୍ଦୀରେ ଅଛନ୍ତି । ପଶୁପକ୍ଷୀ ଶକ୍ତ ମଜୁରୀ ବନ୍ଦୀରେ ଅଛନ୍ତି ଏବଂ ନର୍କର ଜୀବ ଆଜୀବନ ବନ୍ଦୀରେ ଅଛନ୍ତି ।

## ଜନ୍ମ ସମୟରୁ ହିଁ ଚାଲେ ଆରି

ଏ ଶରୀର ମଧ୍ୟ ପ୍ରତିକ୍ଷଣ ମରି ଚାଲିଛି, କିନ୍ତୁ ଲୋକଙ୍କୁ କ'ଣ କିଛି ଜଣା ଅଛି ? କିନ୍ତୁ ଆମ ଲୋକେ ତ କାଠଟିଏ ଦୁଇ ଖଣ୍ଡ ହୋଇ ଯଦି ତଳକୁ ପଡ଼ିଯାଏ, ତେବେ କହିବେ, 'କଟି ଗଲା' । ଆରେ, ଏହା ତ କଟୁଥିଲା, ଏ ଆରି ତ ଚାଲୁଥିଲା ।

## ମୃତ୍ୟୁର ଭୟ

ଏହା ନିରନ୍ତର ଭୟବାଲା ଜଗତ ଅଟେ । ଗୋଟିଏ କ୍ଷଣ ପାଇଁ ବି ନିର୍ଭୟତା ବାଲା ନୁହେଁ ଏ ଜଗତ ଆଉ ଯେତିକି ନିର୍ଭୟତା ଲାଗେ, ସେତିକି ତାହାର ମୂର୍ଚ୍ଛାରେ ଅଛି ଜୀବ । ଖୋଲା ଆଖିରେ ଶୋଉଛନ୍ତି, ଏଣୁ ଏସବୁ ଚାଲୁ ରହିଛି ।

**ପ୍ରଶ୍ନକର୍ତ୍ତା :** ଏପରି କୁହାଯାଏ ଯେ ଆତ୍ମା ମରେ ନାହିଁ, ସେ ତ ଜୀବନ୍ତ ହିଁ ରୁହେ ।

**ଦାଦାଶ୍ରୀ :** ଆତ୍ମା ମରେ ହିଁ ନାହିଁ, କିନ୍ତୁ ଯେ ପର୍ଯ୍ୟନ୍ତ ତୁମେ ଆତ୍ମସ୍ୱରୂପ ହୋଇ ନାହଁ, ସେ ପର୍ଯ୍ୟନ୍ତ ତୁମକୁ ଭୟ ଲାଗୁଥାଏ ନା ? ମରିବାର ଭୟ ଲାଗେ ନା ? ତାହା ତ ଏବେ ଯଦି ଶରୀରରେ କିଛି ଯନ୍ତ୍ରଣା ହେବ ନା, ତେବେ 'ଚାଲିଯିବି, ମରିଯିବି' ଏପରି ଭୟ ଲାଗେ । ଦେହ ଦୃଷ୍ଟି ନ ଥିବ, ତେବେ ନିଜେ ମରେ ହିଁ ନାହିଁ ।

ଏ ତ 'ମୁଁ ହିଁ ଅଟେ ଏହା, ଏହା ମୁଁ ହିଁ ଅଟେ' ଏପରି ତୁମକୁ ଶତ-ପ୍ରତିଶତ ଅଛି । ତୁମକୁ 'ଏ ଚନ୍ଦୁଲାଲ, ସେ ମୁଁ ହିଁ, ଏପରି ଶତ-ପ୍ରତିଶତ ବିଶ୍ୱାସ ଅଛି ନା ?'

## ଯମରାଜ ନା ନିୟମରାଜ ?

ଏହି ହିନ୍ଦୁସ୍ତାନର ସମସ୍ତ ଭ୍ରାନ୍ତି ମୋତେ ବାହାର କରିଦେବାର ଅଛି । ପୁରା ଦେଶ ବିଚରା ଭ୍ରାନ୍ତିରେ ହିଁ ଖତମ୍ ହୋଇ ଗଲାଣି । ଏଣୁ ଯମରାଜ ନାମକ ଜନ୍ତୁ ନାହିଁ, ଏହା ମୁଁ ଗ୍ୟାରେଣ୍ଟି ସହିତ କହୁଛି । ତେବେ କେହି ପଚାରେ, 'କିନ୍ତୁ କ'ଣ ଥିବ ? କିଛି ତ ଥିବ ନା ?' ସେତେବେଳେ ମୁଁ କହିଲି, 'ନିୟମରାଜ ଅଛି ।' ଏଣୁ ଏହା ମୁଁ ଦେଖିକରି କହୁଛି । ମୁଁ କିଛି ପଢ଼ାହୁଆ କୁହେ ନାହିଁ । ଏହା ମୋ ଦର୍ଶନରେ ଦେଖି, ଏ ଆଖିରେ ନୁହେଁ, ମୋର ଯେଉଁ ଦର୍ଶନ ଅଛି, ସେଥିରେ ଦେଖି ମୁଁ ଏ ସବୁ କହୁଅଛି ।

## ମୃତ୍ୟୁ ପରେ କ'ଣ ?

**ପ୍ରଶ୍ନକର୍ତ୍ତା :** ମୃତ୍ୟୁ ପରେ କେଉଁ ଗତି ହେବ ?

**ଦାଦାଶ୍ରୀ :** ଜୀବନ ସାରା ଯେଉଁ କାର୍ଯ୍ୟ କରିଥିବ ସେସବୁ, ଜୀବନ ସାରା ଯେଉଁ ଧନ୍ଦା ଚଳାଇ ଥିବ, ଯାହାସବୁ ଏଠାରେ କରିଥିବ, ସେସବୁର ହିସାବ ମରିବା ସମୟରେ ବାହାରେ । ମରିବା ସମୟରେ ଏକ ଘଣ୍ଟା ପୂର୍ବରୁ ହିସାବ-କିତାବ ସାମ୍ନାକୁ ଆସେ । ଏଠାରେ ଯେଉଁ *ଅଣହକ୍କ* ର ସବୁ ଉଡ଼େଇଥିବ, ପଇସା ଛଡ଼େଇ ନିଅନ୍ତି, ସ୍ତ୍ରୀ ଛଡ଼େଇ ନିଅନ୍ତି, *ଅଣହକ୍କ* ର ସବୁ ନେଇ ନିଅନ୍ତି, ବୁଦ୍ଧି ଦ୍ୱାରା, ପଛେ କୌଣସି ବି ପ୍ରକାରେ ଛଡ଼େଇ ନିଅନ୍ତୁ, ସେ ସମସ୍ତଙ୍କର ପୁଣି ପଶୁଗତି ହୁଏ ଆଉ ଯଦି ସାରା ଜୀବନ ସଜ୍ଜନତା ରଖିଥିବ ତେବେ ମନୁଷ୍ୟଗତି ହୁଏ । ମରଣ ପରେ ଚାରି ପ୍ରକାରର ହିଁ ଗତି ହୋଇଥାଏ । ଯିଏ ସାରା ଗାଁର ଫସଲ ଜଳାଇ ଦିଏ, ନିଜ ସ୍ୱାର୍ଥ ପାଇଁ, ଏପରି ହୁଏ ନା ଏଠି? ସେମାନଙ୍କୁ ଅନ୍ତରେ ନର୍କଗତି ମିଳେ । ଅପକାର ସାମ୍ନାରେ ମଧ୍ୟ ଉପକାର କରନ୍ତି, ଏପରି ଲୋକ ସୁପର ହ୍ୟୁମାନ ଅଟନ୍ତି, ସେମାନେ ପୁଣି ଦେବଗତିରେ ଯାଆନ୍ତି ।

## ଯୋଗ ଉପଯୋଗ ପରୋପକାରାୟ

ମନ-ବଚନ-କାୟା ଏବଂ ଆତ୍ମାର ଉପଯୋଗ ଲୋକମାନଙ୍କ ପାଇଁ କର । ତୋ ନିଜପାଇଁ କରିବୁ ତେବେ କ୍ଷୀରଣୀ(ବୃକ୍ଷର ନାମ) ଜନ୍ମ ମିଳିବ । ପରେ ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ଭୋଗୁଥା । ପରେ ତୋ ଫଳ ଲୋକ ଖାଇବେ, କାଠ ଜାଳିବେ । ପରେ ଲୋକଙ୍କ ଦ୍ୱାରା ତୁ ବନ୍ଦୀ ପରି ବ୍ୟବହୃତ ହେବୁ । ଏଥିପାଇଁ ଭଗବାନ କୁହନ୍ତି ଯେ ତୋ ମନ-ବଚନ-କାୟା ଏବଂ ଆତ୍ମାର ଉପଯୋଗ ଅନ୍ୟମାନଙ୍କ ପାଇଁ କର, ପରେ ତୋତେ ଯଦି କିଛି ବି ଦୁଃଖ ଆସେ ତେବେ ମୋତେ କହିବୁ ।

## ଆଉ ଯିବା କୁଆଡ଼େ ?

**ପ୍ରଶ୍ନକର୍ତ୍ତା :** ଦେହ ଛାଡ଼ିଦେବା ପରେ ପୁଣି ଆସିବାକୁ ହୁଏ କି ?

**ଦାଦାଶ୍ରୀ :** ଅନ୍ୟ କୁଆଡ଼େ ଯିବାର ହିଁ ନାହିଁ । ଏଇଠି କୁ ଏଇଠି, ଆମ ପାଖ-ପଡ଼ିଶାରେ ଯେଉଁ ବଳଦ-ଗାଇ ବନ୍ଧା ହୋଇଥାନ୍ତି, କୁକୁରମାନେ ଯେଉଁ ଆଖପାଖରେ ରୁହନ୍ତି ନା, ଆମ ହାତରୁ ହିଁ ଖାଆନ୍ତି-ପିଅନ୍ତି, ଆମ ମୁହଁକୁ ହିଁ ଦେଖୁଥାନ୍ତି, ଆମକୁ ଚିହ୍ନିଛନ୍ତି, ସେମାନେ ଆମର ମାମୁଁ ଅଟନ୍ତି, ଜେଜେ ଅଟନ୍ତି, ପିଉସା ଅଟନ୍ତି, ସମସ୍ତେ ଯେଉଁଠି କୁ ସେଇଠି, ଏଇଠି କୁ ଏଇଠି ହିଁ ଅଛନ୍ତି । ଏଣୁ ମାରିବ ନାହିଁ ସେମାନଙ୍କୁ । ଖାଇବାକୁ ଦେବ । ତୁମର ହିଁ ପାଖ ଲୋକ ଅଟନ୍ତି । ତୁମକୁ ଚାଟି ବୁଲୁଥାନ୍ତି, ବଳଦ ବି ଚାଟନ୍ତି ।

## ରିଟର୍ନ ଟିକଟ !

**ପ୍ରଶ୍ନକର୍ତ୍ତା :** ଗାଇ-ମଇଁଷୀ ଜନ୍ମ ମଝିରେ କାହିଁକି ମିଳେ ?

**ଦାଦାଶ୍ରୀ :** ଏ ତ ଅନନ୍ତ ଜନ୍ମ, ଏ ଲୋକେ ସବୁ ଆସିଛନ୍ତି, ସେମାନେ ଗାଇ-ମଇଁଷୀରୁ ହିଁ ଆସିଛନ୍ତି । ଆଉ ଏଠାରୁ ଯେଉଁମାନେ ଯିବେ, ସେମାନଙ୍କ ମଧ୍ୟରୁ ପନ୍ଦର ପ୍ରତିଶତକୁ ଛାଡ଼ି ବାକି ସବୁ ସେଠାକାର ହିଁ ଟିକଟ ନେଇ ଆସିଛନ୍ତି । କିଏ-କିଏ ସେଠାକାର ଟିକଟ ନେଇ ଆସିଛନ୍ତି? ନା ଯେଉଁମାନେ ଅପମିଶ୍ରଣ କରନ୍ତି, ଯେଉଁମାନେ *ଅଣହକ୍କ* ର ଛଡ଼ାଇ ନିଅନ୍ତି, *ଅଣହକ୍କ* ର ଭୋଗନ୍ତି, ଯେଉଁଠି *ଅଣହକ୍କ* ଆସିଲା, ସେଠି

ପଶୁ ଅବତାର ମିଳିବାକୁ ଅଛି ।

## ବିଗତ ଜନ୍ମର ବିସ୍ମୃତି

**ପ୍ରଶ୍ନକର୍ତ୍ତା :** ଆମକୁ ବିଗତ ଜନ୍ମର ସ୍ମରଣ କାହିଁକି ରହୁ ନାହିଁ ଆଉ ଯଦି ସ୍ମରଣ ରହିବ ତେବେ କ'ଣ ହେବ ?

**ଦାଦାଶ୍ରୀ :** ତାହା କାହାକୁ ସ୍ମରଣ ରୁହେ ନା ଯାହାକୁ ମରିବା ସମୟରେ ତିଳେ ମାତ୍ର ବି ଦୁଃଖ ହୋଇ ନଥିବ ଆଉ ଏଠି ଭଲ ଆଚାର-ବିଚାରବାଲା ହୋଇଥିବ, ତେବେ ତା'କୁ ସ୍ମରଣ ରୁହେ । କାରଣ ଏହା ଯେ ମାତୃଗର୍ଭରେ ତ ଅପାର ଦୁଃଖ ହୁଏ । କିନ୍ତୁ ଏ ଦୁଃଖ ସହିତ ଅଲଗା ବି ଦୁଃଖ ଥାଏ- ମରିବା ସମୟର; ଏ ଦୁହେଁ ଥାଆନ୍ତି । ସେଥିପାଇଁ ପୁଣି ସେ ବେଭାନ୍(ବେହୋସ୍) ହୋଇଯାଏ ଦୁଃଖ ଯୋଗୁଁ, ଏଣୁ ସ୍ମରଣ ରହେ ନାହିଁ ।

## ଅନ୍ତ ସମୟରେ ପୁଟୁଳି ସଜାଡ଼େ ନା...

ଜଣେ ଅଶୀ ବର୍ଷର ଚାଚା ଥିଲେ, ତାଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରିଥିଲେ । ମୁଁ ଜାଣିଥିଲି ଯେ ଇଏ ଦୁଇ-ଚାରି ଦିନରେ ଯିବେ ଏଠୁ, ତଥାପି ମୋତେ କହୁଛନ୍ତି 'ସେ ଚନ୍ଦୁଲାଲ ତ ମୋତେ ଏଠାକୁ ଭେଟିବାକୁ ବି ଆସୁ ନାହିଁ ।' ମୁଁ କହିଲି 'ଚନ୍ଦୁଲାଲ ତ ଆସିକି ଗଲେଣି ।' ତେବେ କୁହନ୍ତି 'ସେ ନଗୀନଦାସର କ'ଣ ?' ବିଛଣାରେ ପଡ଼ି-ପଡ଼ି *ନୋଂଧ୍* କରୁଥାନ୍ତି ଯେ କିଏ-କିଏ ଭେଟିବାକୁ ଆସୁଛନ୍ତି । ଆରେ, ନିଜ ଶରୀରର ଧ୍ୟାନ ରଖ ନା ! ଏଇ ଦୁଇ-ଚାରି ଦିନରେ ତ ଚାଲିଯିବୁ । ପ୍ରଥମେ ତୁ ନିଜ ପୁଟୁଳି ସମ୍ଭାଳେ । ତୋର ଏଠୁ ନେଇ ଯିବାକୁ ଥିବା ପୁଟୁଳି ତ ଜମା କର । ଏ ନଗୀନଦାସ ଆସିଲା ନାହିଁ ତେବେ ତା'ର କ'ଣ କରିବା ?

## ଜ୍ୱର ଆସିଲା ଆଉ ଠପ୍

ବୁଢ଼ା ଚାଚା ଅସୁସ୍ଥ ଥିବେ ଆଉ ତୁମେ ଡାକ୍ତରଙ୍କୁ ଡାକିଲ, ସବୁ ଚିକିତ୍ସା କରାଇଲ, ତଥାପି ଚାଲିଗଲେ । ପରେ ଶୋକ ପ୍ରଦର୍ଶନ କରିବାବାଲା ଥାଆନ୍ତି ନା, ସେମାନେ ଆଶ୍ୱାସନା ଦେବାକୁ ଆସନ୍ତି । ପୁଣି ପଚାରନ୍ତି, 'କ'ଣ ହୋଇଥିଲା ଚାଚାଙ୍କୁ ?'

ତେବେ ତୁମେ କୁହ ଯେ 'ଅସଲରେ ମ୍ୟାଲେରିଆ ପରି ଲାଗୁଥିଲା, କିନ୍ତୁ ପୁଣି ଡାକ୍ତର କହିଲା ଯେ ଏହା ତ ଫ୍ଲୁ ପରି ଅଟେ !' ସେମାନେ ପଚାରିବେ ଯେ କେଉଁ ଡାକ୍ତରକୁ ଡାକିଥିଲ ? ତୁମେ କୁହ ଯେ ସେ ଅମକକୁ । ତେବେ କହିବେ, 'ତୁମର ବୁଦ୍ଧି ନାହିଁ । ସେ ଡାକ୍ତରକୁ ଡାକିବାର ଆବଶ୍ୟକତା ଥିଲା ।' ପରେ ଅନ୍ୟ ଜଣେ ଆସି ତୁମକୁ ଗାଳି କରିବ, 'ଏଭଳି କରିବା ଦରକାର ନା ! ଏମିତି ମୁର୍ଖଙ୍କ ପରି କାମ କରୁଛ ?' ଅର୍ଥାତ ସାରାଦିନ ଲୋକେ ଗାଳି କରୁଥାନ୍ତି ! ଏଣୁ ଏ ଲୋକେ ତ ଓଲଟା ଚଢ଼ି ଯାଆନ୍ତି, ତୁମ ସରଳତାର ଲାଭ ଉଠାନ୍ତି । ସେଥିପାଇଁ ମୁଁ ତୁମକୁ କ'ଣ ବୁଝାଏ ଯେ ଲୋକେ ଯେବେ ପରଦିନ ପଚାରିବାକୁ ଆସିବେ ତେବେ ତୁମକୁ କ'ଣ କହିବା ଉଚିତ ନା, 'ଭାଇ, ଚାଚାଙ୍କୁ ଟିକେ ଜ୍ୱର ଆସିଲା ଆଉ ଠପ୍ ହୋଇଗଲେ, ଆଉ କିଛି ହୋଇ ନଥିଲା ।' ସାମ୍ନାବାଲା ପଚାରିଲେ ଏତିକି ହିଁ ଜବାବ । ଆମକୁ ବୁଝିନେବା ଉଚିତ ଯେ ବିସ୍ତାର ରୂପେ କହିବାକୁ ଯିବା ତେବେ ଝଂଝଟ୍ ହେବ । ତାହା ଅପେକ୍ଷା ତ, ରାତିରେ ଜ୍ୱର ଆସିଲା ଆଉ ସକାଳେ ଠପ୍ ହୋଇଗଲେ, କହିବା ତେବେ କୌଣସି ଝଂଝଟ୍ ହିଁ ନାହିଁ ନା !

## ସ୍ୱଜନଙ୍କ ଅନ୍ତିମ ସମୟରେ ଦେଖାଶୁଣା

**ପ୍ରଶ୍ନକର୍ତ୍ତା :** କେଉଁ ସ୍ୱଜନଙ୍କ ଅନ୍ତକାଳ ପାଖେଇ ଆସିଥିବ ତେବେ ତାଙ୍କ ପ୍ରତି ଆଖ-ପାଖର ବନ୍ଧୁ-ପରିଜନଙ୍କ ବ୍ୟବହାର କିପରି ହେବା ଉଚିତ ?

**ଦାଦାଶ୍ରୀ :** ଯାହାଙ୍କର ଅନ୍ତକାଳ ପାଖେଇ ଆସିଥିବ, ତାଙ୍କୁ ତ ବହୁତ ଭଲ ଭାବରେ ସମ୍ଭାଳିବା ଉଚିତ । ତାଙ୍କର ପ୍ରତ୍ୟେକ ଶବ୍ଦକୁ ସମ୍ଭାଳିବା ଉଚିତ । ତାଙ୍କୁ ନାରାଜ ନ କରିବା ଉଚିତ । ସମସ୍ତେ ତାଙ୍କୁ ଖୁସି ରଖିବା ଉଚିତ ଏବଂ ସେ ଯଦି ଓଲଟା କୁହନ୍ତି ତେବେ ମଧ୍ୟ ତୁମକୁ ସ୍ୱୀକାର କରିବା ଉଚିତ ଯେ 'ତୁମର ଠିକ !' ସେ କହିବେ 'କ୍ଷୀର ଆଣ' ତେବେ ତୁରନ୍ତ କ୍ଷୀର ଆଣି ଦେଇଦେବା । ସେତେବେଳେ ସେ କୁହନ୍ତି 'ଏହା ତ ପାଣିଚିଆ ଅଟେ, ଅଲଗା ଆଣ !' ତେବେ ତୁରନ୍ତ ଅଲଗା କ୍ଷୀର ଗରମ କରି ନେଇ ଆସିବା । ପରେ କୁହନ୍ତି 'ଏହା ଶୁଦ୍ଧ-ଭଲ ଅଟେ ।' କିନ୍ତୁ ତାଙ୍କୁ ଅନୁକୂଳ ଆସିବା ପରି କରିବା ଉଚିତ, ଏପରି ସବୁ କହିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ସେଥିରେ ଠିକ-ଭୁଲର ଝଂଝଟ୍ କରିବୁ ନାହିଁ ?

**ଦାଦାଶ୍ରୀ :** ଏ ଠିକ-ଭୁଲ କିଛି ଦୁନିଆରେ ନଥାଏ । ତାଙ୍କୁ ପସନ୍ଦ ଆସିଲା ମାନେ ବାସ୍, ସେହି ଅନୁସାରେ ସବୁ କରିଚାଲିବା । ତାଙ୍କୁ ଅନୁକୂଳ ହେବାପରି ବ୍ୟବହାର କରିଚାଲିବା । ସେ ଛୋଟ ପିଲାମାନଙ୍କ ସହ ଆମେ କିପରି ବ୍ୟବହାର କରୁଛେ ? ପିଲା ଯଦି କାଚ ଗ୍ଲାସ ଭାଙ୍ଗି ପକାଏ ତେବେ ଆମେ ତା'କୁ ଗାଳି କରୁଛେ ? ଦୁଇ ବର୍ଷର ପିଲା ହୋଇଥିବ, ତା'କୁ କିଛି କହୁଛେ ଯେ କାହିଁକି ଭାଙ୍ଗି ଦେଲୁ ଅଥବା ଏମିତି-ସେମିତି ? ପିଲାଙ୍କ ସହିତ ବ୍ୟବହାର କରୁଛେ, ସେହିପରି ତାଙ୍କ ସହ ବ୍ୟବହାର କରିବା ଉଚିତ ।

## ଅନ୍ତିମ କ୍ଷଣରେ ଧର୍ମଧ୍ୟାନ !

**ପ୍ରଶ୍ନକର୍ତ୍ତା :** ଅନ୍ତିମ କ୍ଷଣରେ ଅମକ ଲାମାରେ କିଛି କ୍ରିୟା କରାନ୍ତି । ଯେତେବେଳେ ମୃତ୍ୟୁ-ଶଯ୍ୟାରେ ମଣିଷ ଥାଏ, ସେତେବେଳେ ତିବତ ଲାମାରେ ଏପରି କୁହାଯାଇଛି ଯେ ସେମାନେ ତା' ଆତ୍ମାକୁ କୁହନ୍ତି ଯେ ତୁ ଏହିପରି ଯା । ଅଥବା ଆମର ଯେଉଁ ଗୀତା-ପାଠ କରାନ୍ତି, ଅବା ଭଲ ଶବ୍ଦ କିଛି ତା'କୁ ଶୁଣାନ୍ତି, ତାହା ଦ୍ୱାରା ଅନ୍ତ ସମୟରେ ତାଙ୍କ ଉପରେ କିଛି ପ୍ରଭାବ ପଡ଼େ ପ୍ରକୃତରେ ?

**ଦାଦାଶ୍ରୀ :** କିଛି ହୁଏ ନାହିଁ । ବାର ମାସର ହିସାବ-କିତାବ ତୁମେ ଲେଖୁଥିବ, ତେବେ (ତୁମକୁ କୁହାଯିବ ଯେ) ଧନ୍ତେରସ୍‌ରେ ତୁମେ ବଡ଼ କଷ୍ଟରେ ଲାଭ କର ଏବଂ ସବୁ କ୍ଷତି ପୂରଣ କରିଦିଅ, ତେବେ ଚଳିବ ?

**ପ୍ରଶ୍ନକର୍ତ୍ତା :** ଚଳିବ ନାହିଁ ।

**ଦାଦାଶ୍ରୀ :** ଏପରି କାହିଁକି ?

**ପ୍ରଶ୍ନକର୍ତ୍ତା :** ତାହା ତ ସାରା ବର୍ଷର ହିଁ ଆସେ ନା !

**ଦାଦାଶ୍ରୀ :** ସେହିପରି ତାହା ସାରା ଜୀବନର ହିସାବ-କିତାବ ଆସେ । ଏହା ତ, ଲୋକେ ଠକୁଛନ୍ତି ! ଲୋକଙ୍କୁ ମୁର୍ଖ ବନାଉଛନ୍ତି ।

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ମଣିଷର ଶେଷ ଅବସ୍ଥା ହୋଇଥିବ, ଜାଗ୍ରତ ଅବସ୍ଥା ଥିବ, ଏବେ ସେ ସମୟରେ କେହି ତା'କୁ ଗୀତା ପାଠ ଶୁଣାଏ ଅଥବା କିଛି ଅଲଗା ଶାସ୍ତ୍ରର କଥା ଶୁଣାଏ, ତା'କୁ କାନରେ କିଛି କୁହେ...

**ଦାଦାଶ୍ରୀ :** ସେ ନିଜେ କହୁଥିବ ତେବେ, ତା'ର ଇଚ୍ଛା ଥିବ ତେବେ ଶୁଣାଇବା ଉଚିତ ।

## ମର୍ସି କିଲିଙ୍ଗ୍

**ପ୍ରଶ୍ନକର୍ତ୍ତା :** ଯିଏ ଭାରୀ ପୀଡ଼ା ସହୁଥିବ ତା'କୁ ପୀଡ଼ା ସହିବାକୁ ଛାଡ଼ିଦେବା, ଆଉ ଯଦି ତା'କୁ ମାରିଦେବା ତେବେ ପୁଣି ତା'ର ପରଜନ୍ମରେ ପୀଡ଼ା ସହିବା ବାକି ରହିବ, ଏହି କଥା ଠିକ ଲାଗୁନାହିଁ । ସେ ଭାରୀ ପୀଡ଼ା ସହୁଥିବ ତେବେ ତାହାର ଅନ୍ତ ଆଣିଦେବା ହିଁ ଉଚିତ୍, ସେଥିରେ କ'ଣ ଭୁଲ ?

**ଦାଦାଶ୍ରୀ :** ଏପରି କାହାକୁ ଅଧିକାର ହିଁ ନାହିଁ । ଆମକୁ ଚିକିତ୍ସା କରାଇବାର ଅଧିକାର ଅଛି, ସେବା କରିବାର ଅଧିକାର ଅଛି, କିନ୍ତୁ କାହାକୁ ମାରିବାର ଅଧିକାର ବିଲକୁଲ ନାହିଁ ।

**ପ୍ରଶ୍ନକର୍ତ୍ତା :** ତେବେ ସେଥିରେ ଆମର କ'ଣ ମଙ୍ଗଳ ହେଲା ?

**ଦାଦାଶ୍ରୀ :** ତେବେ ମାରିବା ଦ୍ୱାରା କ'ଣ ମଙ୍ଗଳ ହେଲା ? ତୁମେ ସେ ପୀଡ଼ାଗ୍ରସ୍ତକୁ ମାରି ପକାଅ ତେବେ ତୁମର ମଣିଷତ୍ୱ ଚାଲିଯାଏ ଆଉ ସେ ରାସ୍ତା ମାନବତାର ସିଦ୍ଧାନ୍ତ ବାହାରେ, ମାନବତାର ବିରୁଦ୍ଧ ଅଟେ ।

## ସାଥୀ କେବଳ ଶ୍ମଶାନ ପର୍ଯ୍ୟନ୍ତ

ଏ ତକିଆ ଥାଏ, ତାହାର ଖୋଳ ବଦଳି ଚାଲିଥାଏ, କିନ୍ତୁ ତକିଆ ତ ସେଇଟାକୁ ସେଇଟା । ଖୋଳ ଫାଟି ଯାଏ ଏବଂ ବଦଳୁ ଥାଏ, ସେହିପରି ଏହି ଖୋଳ ମଧ୍ୟ ବଦଳି ଚାଲିଥାଏ ।

ନହେଲେ ଏ ଜଗତ ପୁରା *ପୋଲମ୍‌ପୋଲ୍* ଅଟେ । ତଥାପି ବ୍ୟବହାରରେ

ନ କହିଲେ ସାମ୍ନାବାଲାର ମନକୁ ଦୁଃଖ ହେବ, କିନ୍ତୁ ଶ୍ମଶାନରେ ସାଥିରେ ଯାଇ ସେଠି ଚିତାରେ କେହି ପଡ଼ି ନାହିଁ । ଘରର ସବୁ ଲୋକ ଫେରି ଆସନ୍ତି । ସମସ୍ତେ ସିଆଣିଆ ଅଟନ୍ତି । ତା' ମା ହୋଇଥିବ, ତେବେ ସେ ମଧ୍ୟ କାନ୍ଦି-କାନ୍ଦି ଫେରି ଆସେ ।

**ପ୍ରଶ୍ନକର୍ତ୍ତା :** ପୁଣି ତା' ନାଁ ରେ ଛାତି ପିଟନ୍ତି ଯେ, ପଛରେ କିଛି ଛାଡ଼ି ଯାଇ ନାହାନ୍ତି, ଆଉ ଯଦି ଦୁଇ ଲକ୍ଷ ଛାଡ଼ି ଯାଇଥିବେ, ତେବେ କିଛି କୁହନ୍ତି ନାହିଁ ।

**ଦାଦାଶ୍ରୀ :** ହଁ, ଏହିଭଳି । ଏ ତ ଛାଡ଼ି ଯାଇନାହିଁ, ତାହାର କାନ୍ଦ । 'ମରିଗଲା ଏବଂ ମାରି ଦେଇଗଲା' ଏମିତି ବି ଭିତରେ-ଭିତରେ କୁହନ୍ତି ! 'କିଛି ଛାଡ଼ି ଯାଇନାହିଁ ଏବଂ ଆମକୁ ମାରିଦେଇ ଗଲା !' ଏବେ ସେ ଛାଡ଼ି ଯାଇନାହିଁ, ସେଥିରେ ସେ ସ୍ତ୍ରୀର ଭାଗ୍ୟ ଖରାପ, ସେଥିପାଇଁ ଛାଡ଼ି ଯାଇନାହିଁ, କିନ୍ତୁ ମରିବା ବାଲାକୁ ଗାଳି ଖାଇବାର ଲେଖା ଥିଲା, ସେଥିପାଇଁ ଖାଇଲା ନା ! ଏତେ-ଏତେ ଶୁଣାନ୍ତି !

ଆମ ଲୋକେ ଯେଉଁମାନେ ଶ୍ମଶାନ ଯାଆନ୍ତି, ସେମାନେ ଫେରନ୍ତି ନାହିଁ ନା, ନା ସମସ୍ତେ ଫେରି ଆସନ୍ତି ? ଅର୍ଥାତ ଏହା ତ ଏକ ପ୍ରକାରର ପ୍ରହସନ ଅଟେ । କାନ୍ଦିବା ତେବେ ମଧ୍ୟ ଦୁଃଖ ଆଉ ନ କାନ୍ଦିବା ତେବେ ମଧ୍ୟ ଦୁଃଖ । ବହୁତ କାନ୍ଦିବା, ତେବେ ଲୋକେ କହିବେ ଯେ, 'ଆଉ କାହା ଘରେ ମରୁ ନାହାନ୍ତି, ଯେ ଏତେ କାନ୍ଦି ଚାଲିଛ? କ'ଣ, ପାଗଳ ଅଟ ନା କ'ଣ?' ଆଉ ନ କାନ୍ଦିବା, ତେବେ କହିବେ ଯେ 'ତୁମେ ପଥର ପରି ଅଟ, ହୃଦୟ ତୁମର ପଥର ପରି ଅଟେ !' ଅର୍ଥାତ କ'ଣ କରିବା ତାହା ହିଁ ସମସ୍ୟା ! ସବୁ ରୀତି ଅନୁସାରେ ହେବା ଉଚିତ, ଏପରି କହିବେ ।

ସେଠି ଶ୍ମଶାନରେ ଜଳାଇବେ ମଧ୍ୟ ଏବଂ ସାଙ୍ଗ ହୋଇ ପାଖ ହୋଟେଲରେ ଚା-ଜଳଖିଆ ମଧ୍ୟ କରିବେ, ଏପରି ଜଳଖିଆ କରନ୍ତି ନା ଲୋକେ ?

**ପ୍ରଶ୍ନକର୍ତ୍ତା :** ଜଳଖିଆ ସାଥିରେ ହିଁ ନେଇ ଯାଆନ୍ତି !

**ଦାଦାଶ୍ରୀ :** ଏମିତି ! କି କଥା କହୁଛ ? ଅର୍ଥାତ, ଏହିପରି ଅଟେ ଏ ପୁରା ଜଗତ ! ଏପରି ଜଗତରେ କିଭଳି ରାସ ଆସିବ ?

'ଯିବା-ଆସିବା'ର ସମ୍ବନ୍ଧ ରଖନ୍ତି, କିନ୍ତୁ ମୁଣ୍ଡକୁ ନିଅନ୍ତି ନାହିଁ । ତୁମେ ନେଉଛ

ମୁଣ୍ଡକୁ ଏବେ ? ମୁଣ୍ଡକୁ ନେଉଛ ? ପତ୍ନୀର ଅବା ଅନ୍ୟ କାହାର ବି ନୁହେଁ ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** କି କଥା କହୁଛ ? ! ଆଉ ଏମାନେ ତ ସବୁବେଳେ ପତ୍ନୀକୁ ପାଖରେ ଧରି ବସାଉଥାନ୍ତି । କହିବେ, ତୋ ବିନା ମୋତେ ଭଲ ଲାଗୁନାହିଁ । କିନ୍ତୁ ଶ୍ମଶାନରେ କେହି ସାଥିରେ ଆସେ ? ଆସେ କେହି ?

## ମୃତ୍ୟୁତିଥି ସମୟରେ

**ପ୍ରଶ୍ନକର୍ତ୍ତା :** ପରିବାରରେ କାହାର ତିଥି ଆସେ, ତେବେ ସେ ଦିନ ପରିବାରଜନଙ୍କୁ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ଭଗବାନଙ୍କୁ ପ୍ରାର୍ଥନା କରିବା ଉଚିତ ଯେ ତା'ର ମଙ୍ଗଳ ହେଉ ।

## ପରେ ଠିକଣା ମିଳେ ନାହିଁ

**ପ୍ରଶ୍ନକର୍ତ୍ତା :** କୌଣସି ବ୍ୟକ୍ତିର ଅବସାନ ହୁଏ, ତେବେ ଆମକୁ ଯଦି ଜାଣିବାର ଥିବ ଯେ ସେ ବ୍ୟକ୍ତି ଏବେ କେଉଁଠି ଅଛି, ତେବେ ତାହା କିପରି ଜଣା ପଡ଼ିବ ?

**ଦାଦାଶ୍ରୀ :** ତାହା ତ ଅମକ ଜ୍ଞାନ ବିନା ଦେଖାଯାଏ ନାହିଁ ନା ! ଅମକ ଜ୍ଞାନ ଦରକାର ତା'ପାଇଁ । ଆଉ ଜାଣିଲେ ମଧ୍ୟ ତାହାର କିଛି ଅର୍ଥ ନାହିଁ । କିନ୍ତୁ ଆମେ ଭାବନା କରିବା ତେବେ ଭାବନା ଅବଶ୍ୟ ପହଞ୍ଚେ । ଆମେ ମନେ ପକାଇବା, ଭାବନା କରିବା ତେବେ ପହଞ୍ଚେ । ତାହା ତ ଜ୍ଞାନ ବିନା ଅନ୍ୟ କିଛି ଜଣା ପଡ଼େ ନାହିଁ ନା !

ତୋତେ କେଉଁ ବ୍ୟକ୍ତିର ଠିକଣା ଖୋଜିବାର ଅଛି ? କେହି ଆତ୍ମୀୟ ସ୍ୱଜନ ତୋର ଯାଇଛନ୍ତି ?

**ପ୍ରଶ୍ନକର୍ତ୍ତା :** ମୋ ନିଜ ଭାଇ ହିଁ ଏବେ ଏକ୍ସପାୟର୍ ହୋଇଗଲା ।

**ଦାଦାଶ୍ରୀ :** ତେବେ ସେ ତୋତେ ମନେ ପକାଉ ନାହିଁ ଆଉ ତୁ ତା'କୁ ମନେ ପକେଇ ଚାଲିଛୁ ? ଏହି ଏକ୍ସପାୟର୍ ହେବା, ତାହାର ମାନେ କ'ଣ, ବୁଝୁଛୁ ? ଏକ୍ସପାୟର୍ ହେବା ମାନେ ଖାତାର ହିସାବ ପୂରା ହେବା । ଏଣୁ ଆମକୁ କ'ଣ କରିବା ଉଚିତ ? ଆମକୁ ଯଦି ସେ ବହୁତ ମନେ ପଡ଼େ, ତେବେ ବୀତରାଗ୍ ଭଗବାନଙ୍କୁ କହିବ ଯେ ତା'କୁ ଶାନ୍ତି ଦିଅନ୍ତୁ । ମନେ ପଡୁଛି, ଏଣୁ ତା'କୁ ଶାନ୍ତି ମିଳୁ ଏପରି କହିବ । ଅନ୍ୟ କ'ଣ ହୋଇପାରିବ ଆମ ଦ୍ୱାରା ?

## ଆଲ୍ଲାହଙ୍କ ଅମାନତ

ତୁମକୁ ଯାହା ପଚାରିବାର ଅଛି ପଚାର । ଆଲ୍ଲାହଙ୍କ ପାଖରେ ପହଞ୍ଚିବା ରାସ୍ତାରେ ଯାହା କିଛି ବାଧା ଆସୁଛି, ତାହା ମୋତେ ପଚାର, ସେସବୁ ମୁଁ ତୁମର ଦୂର କରିଦେବି ।

**ପ୍ରଶ୍ନକର୍ତ୍ତା :** ମୋ ପୁଅର ଦୁର୍ଘଟଣାରେ ମରଣ ହୋଇଛି, ତେବେ ସେହି ଦୁର୍ଘଟଣାର କାରଣ କ'ଣ ହୋଇଥିବ ?

**ଦାଦାଶ୍ରୀ :** ଏହି ସଂସାରରେ ଯାହା ସବୁ ଆଖିରେ ଦେଖାଯାଉଛି, କାନରେ ଶୁଣିବାକୁ ମିଳୁଛି, ସେ ସବୁ 'ରିଲେଟିଭ କରେକ୍ଟ'(ବ୍ୟବହାର ସତ୍ୟ) ଅଟେ, ସମ୍ପୂର୍ଣ୍ଣ ସତ୍ୟ ନୁହେଁ ଏ କଥା ! ଏହି ଦେହ ମଧ୍ୟ ଆମର ନୁହେଁ, ତେବେ ପୁଅ ଆମର କିପରି ହୋଇ ପାରିବ ? ଏହା ତ ବ୍ୟବହାରରେ, ଲୋକ-ବ୍ୟବହାରରେ ନିଜ ପୁଅ ଗଣାଯାଏ, ବାସ୍ତବରେ ସେ ଆମ ପୁଅ ହୋଇ ନଥାଏ । ବାସ୍ତବରେ ତ ଏହି ଦେହ ମଧ୍ୟ ଆମର ନୁହେଁ । ଏଣୁ, ଯାହା ଆମ ପାଖରେ ରୁହେ, ସେତିକି ହିଁ ଆମର ଏବଂ ଅନ୍ୟ ସବୁ ପର ଜିନିଷ ଅଟେ ! ଏଣୁ ପୁଅକୁ ନିଜ ପୁଅ ବୋଲି ମାନୁଥିବା, ତେବେ *ଉପାଧି* ହେବ ଏବଂ ଅଶାନ୍ତି ରହିବ ! ସେ ପୁଅ ଏବେ ଗଲା, ଖୁଦା(ଭଗବାନ)ର ଏହା ହିଁ ଇଚ୍ଛା, ଏଣୁ ତା'କୁ ଏବେ 'ଲେଟ୍ ଗୋ' କରିଦିଅ ।

**ପ୍ରଶ୍ନକର୍ତ୍ତା :** ତାହା ତ ଠିକ କଥା, ଆଲ୍ଲାହଙ୍କ ଅମାନତ ଆମ ପାଖରେ ଥିଲା, ସେ ନେଇଗଲେ !

**ଦାଦାଶ୍ରୀ :** ହଁ, ବାସ୍ । ଏ ସାରା ବଗିଚା ଆଲ୍ଲାହଙ୍କର ହିଁ ଅଟେ ।

**ପ୍ରଶ୍ନକର୍ତ୍ତା :** ଏହିଭଳି ଯେଉଁ ତା'ର ମୃତ୍ୟୁ ହେଲା, ତାହା ଆମର କୁକର୍ମ ହୋଇଥିବ ?

**ଦାଦାଶ୍ରୀ :** ହଁ, ପୁଅର ବି କୁକର୍ମ ଏବଂ ତୁମର ବି କୁକର୍ମ, ଭଲ କର୍ମ ହୋଇଥିବ, ତେବେ ତାହା ବଦଳରେ ଭଲ ମିଳେ ।

## ପହଞ୍ଚେ କେବଳ ଭାବର ସ୍ପନ୍ଦନ

ପିଲାମାନେ ମରିଗଲା ପରେ ତାଙ୍କ ପଛରେ ତାଙ୍କର ଚିନ୍ତା କରିବା ଦ୍ୱାରା ତାଙ୍କୁ ଦୁଃଖ ହୋଇଥାଏ । ଆମ ଲୋକେ ଅଜ୍ଞାନତା କାରଣରୁ ଏପରି ସବୁ କରନ୍ତି । ଏଣୁ ତୁମକୁ ଯେମିତିକୁ ସେମିତି(as it is) ବୁଝି ଶାନ୍ତିପୂର୍ବକ ରହିବା ଉଚିତ । ଅଯଥା ମୁଣ୍ଡ ଖରାପ କରିବା, ତାହାର ଅର୍ଥ କ'ଣ ? ସବୁ ଜାଗାରେ, କେହି ଏମିତି ନାହାନ୍ତି ଯାହାଙ୍କର ପିଲା ମରି ନଥିବେ ! ଏମାନେ ତ ସାଂସାରିକ ଋଣାନୁବନ୍ଧ ଅଟନ୍ତି, ଦିଆ-ନିଆର ହିସାବ ଅଟନ୍ତି । ଆମର ବି ପୁଅ-ଝିଅ ଥିଲେ, କିନ୍ତୁ ସେମାନେ ମରିଗଲେ । ଅତିଥି ଆସିଥିଲା, ସେ ଅତିଥି ଚାଲିଗଲା । ସେ ଆମ ଜିନିଷ କେଉଁଠି ? ଆମକୁ ମଧ୍ୟ ଯିବାର ନାହିଁ କି ? ଆମକୁ ବି ଯିବାର ଅଛି ସେଠାକୁ, ଏ କି ତୋଫାନ ପୁଣି ? ଏଣୁ ଯେଉଁମାନେ ଜୀବିତ ଅଛନ୍ତି, ସେମାନଙ୍କୁ ଶାନ୍ତି ଦିଅ । ଗଲା ସେ ତ ଗଲା, ତା'କୁ ମନେ ପକାଇବା ଛାଡ଼ିଦିଅ । ଏଠି ଜୀବିତ ଥିବେ, ଯେତିକି ଆଶ୍ରିତ ଥିବେ, ସେମାନଙ୍କୁ ଶାନ୍ତି ଦେବା, ସେତିକି ଆମର କର୍ତ୍ତବ୍ୟ । ଏ ତ ଯିବାବାଲାକୁ ମନେ ପକାନ୍ତି ଆଉ ଏମାନଙ୍କୁ ଶାନ୍ତି ଦେଇ ପାରନ୍ତି ନାହିଁ । ଏହା କିଭଳି ମୁର୍ଖାମି? ଅତଃ କର୍ତ୍ତବ୍ୟ ଭୁଲି ଯାଉଛ ସବୁ । କ'ଣ ତୁମକୁ ଏପରି ଲାଗୁଛି ? ଗଲା ସେ ତ ଗଲା । ପକେଟରୁ ଲକ୍ଷେ ଟଙ୍କା ଖସି ପଡ଼ିଲା ଏବଂ ଆଉ ମିଳିଲା ନାହିଁ ତେବେ ଆମକୁ କ'ଣ କରିବା ଉଚିତ ? ମୁଣ୍ଡ ପିଟିବା ଉଚିତ ?

ଆମ ହାତର ଖେଳ ନୁହେଁ ଏହା ଆଉ ସେ ବିଚରାକୁ ସେଠି ଦୁଃଖ ହେଉଛି । ଆମେ ଏଠି ଦୁଃଖୀ ହେଉଛେ, ତାହାର ପ୍ରଭାବ ସେଠି ତା'କୁ ପହଞ୍ଚୁଛି । ତେବେ ତା'କୁ ବି ସୁଖୀ ହେବାକୁ ଦେଉନେ ଏବଂ ଆମେ ବି ସୁଖୀ ହେଉନେ । ଏଥିପାଇଁ ଶାସ୍ତ୍ରକାରମାନେ କହିଛନ୍ତି ଯେ 'ଯିବା ପରେ *ଉପାଧି* କରିବ ନାହିଁ ।' ଏଥିପାଇଁ ଆମ

ଲୋକେ କ'ଣ କଲେ ନା 'ଗରୁଡ଼ ପୁରାଣ ବସାଅ, ଅମକ ବସାଅ, ପୂଜା କର, ଆଉ ମନରୁ ବାହାର କରିଦିଅ।' ତୁମେ ଏମିତି କିଛି ବସାଇ ଥିଲ? ତଥାପି ଭୁଲି ପାରିଲ ନାହିଁ?

**ପ୍ରଶ୍ନକର୍ତ୍ତା :** କିନ୍ତୁ ସେ ଭୁଲି ହେଉନାହିଁ। ବାପ-ପୁଅଙ୍କ ଭିତରେ ବ୍ୟବହାର ଏତେ ଭଲ ଚାଲୁଥିଲା। ଏଣୁ ତା'କୁ ଭୁଲିହେବ ଏପରି ନୁହେଁ।

**ଦାଦାଶ୍ରୀ :** ହଁ, ଭୁଲିପାରିବା ଏପରି ନୁହେଁ, କିନ୍ତୁ ଆମେ ଭୁଲିବା ନାହିଁ ତେବେ ତାହାର ଆମକୁ ଦୁଃଖ ହୁଏ ଏବଂ ତା'କୁ ସେଠି ଦୁଃଖ ହୁଏ। ଏହିପରି ନିଜ ମନରେ ତା'ପାଇଁ ଦୁଃଖ ମନାଇବା, ତାହା ବାପ ହିସାବରେ ଆମ ପାଇଁ କାମକୁ ନୁହେଁ।

**ପ୍ରଶ୍ନକର୍ତ୍ତା :** ତା'କୁ କିପରି ଦୁଃଖ ହୁଏ?

**ଦାଦାଶ୍ରୀ :** ଆମେ ଯଦି ଏଠି ଦୁଃଖୀ ହେବା, ତାହାର ପ୍ରଭାବ ସେଠି ନ ପହଞ୍ଚି ରୁହେ ନାହିଁ। ଏହି ଜଗତରେ ତ ସବୁ ଫୋନ ଭଳି ଅଟେ, ଟେଲିଭିଜନ ପରି ଅଟେ ଏହି ସଂସାର! ଆଉ ଆମେ ଏଠି *ଉପାଧି* କରିବା ତେବେ ସେ ଫେରି ଆସିବ?

**ପ୍ରଶ୍ନକର୍ତ୍ତା :** ନା।

**ଦାଦାଶ୍ରୀ :** କୌଣସି ବି ଉପାୟରେ ଆସିବାର ନାହିଁ?

**ପ୍ରଶ୍ନକର୍ତ୍ତା :** ନା।

**ଦାଦାଶ୍ରୀ :** ତେବେ ପୁଣି *ଉପାଧି* କରିବା, ତେବେ ତା'କୁ ପହଞ୍ଚେ ଆଉ ତା' ନାମରେ ଆମେ ଧର୍ମ-ଭକ୍ତି କରିବା, ତେବେ ମଧ୍ୟ ତା'କୁ ଆମର ଭାବନା ପହଞ୍ଚି ଥାଏ ଏବଂ ତା'କୁ ଶାନ୍ତି ହୁଏ। ତା'କୁ ଶାନ୍ତି ପହଞ୍ଚାଇବାର କଥା ତୁମକୁ କିପରି ଲାଗୁଛି? ଆଉ ତା'କୁ ଶାନ୍ତି ମିଳୁ ଏହା ତୁମର କର୍ତ୍ତବ୍ୟ ନା? ଏଣୁ ଏମିତି କିଛି କର ଯେ ତା'କୁ ଭଲ ଲାଗୁ। ଦିନେ ସ୍କୁଲର ପିଲାଙ୍କୁ ପେଡ଼ା ଖୁଆଇବା, ଏମିତି କିଛି କର।

ଏଣୁ ଯେତେବେଳେ ପୁଅ ମନେ ପଡ଼େ, ସେତେବେଳେ ତା'ର ଆତ୍ମାର କଲ୍ୟାଣ ହେଉ ଏପରି କହିବ । 'କୃପାଳୁଦେବ'ଙ୍କ ନାମ ନେବ, 'ଦାଦା ଭଗବାନ' କହିବ ତେବେ ମଧ୍ୟ କାମ ହେବ । କାହିଁକିନା 'ଦାଦା ଭଗବାନ' ଆଉ 'କୃପାଳୁଦେବ' ଆତ୍ମ-ସ୍ୱରୂପରେ ଏକ ହିଁ ଅଟନ୍ତି । ଦେହ ହିସାବରେ ଅଲଗା ଦେଖାଯାନ୍ତି, ଆଖିରେ ଅଲଗା ଦେଖାଯାନ୍ତି, କିନ୍ତୁ ବସ୍ତୁତ୍ୱ ଏକ ହିଁ ଅଟେ । ମାନେ ମହାବୀର ଭଗବାନଙ୍କ ନାମ ନେବ ତେବେ ମଧ୍ୟ ଗୋଟିଏ କଥା । ତା'ର ଆତ୍ମାର କଲ୍ୟାଣ ହେଉ ସେତିକି ହିଁ ଆମକୁ ନିରନ୍ତର ଭାବନା କରିବାର ଅଛି । ଆମେ ତା' ସାଥିରେ ନିରନ୍ତର ରହିଛେ, ସାଥିରେ ଖାଇଛେ-ପିଇଛେ, ଏଣୁ ତା'ର କଲ୍ୟାଣ କିପରି ହେବ ଏପରି ଭାବନା କରିବା ଉଚିତ । ଆମେ ପର ଲୋକଙ୍କ ପାଇଁ ଭଲ ଭାବନା କରୁଛେ, ତେବେ ଏ ତ ଆମ ସ୍ୱଜନ ପାଇଁ କ'ଣ ନକରିବା ?

## କାନ୍ଦନ୍ତି, ସ୍ୱ ପାଇଁ ନା ଯିବାବାଲା ପାଇଁ ?

**ପ୍ରଶ୍ନକର୍ତ୍ତା :** ଆମ ଲୋକେ ପୂର୍ବଜନ୍ମ ବୁଝନ୍ତି, ତଥାପି ଘରେ କେହି ମରିଗଲେ, ସେ ସମୟରେ କାନ୍ଦନ୍ତି କାହିଁକି ?

**ଦାଦାଶ୍ରୀ :** ସେମାନେ ତ ନିଜ-ନିଜ ସ୍ୱାର୍ଥ ପାଇଁ କାନ୍ଦନ୍ତି । ବହୁତ ନିକଟ ସମ୍ପର୍କୀୟ ହୋଇଥିବ, ତେବେ ସେମାନେ ସତରେ କାନ୍ଦନ୍ତି, କିନ୍ତୁ ଅନ୍ୟ ସବୁ ଯେଉଁ ସତରେ କାନ୍ଦନ୍ତି ନା, ସେମାନେ ତ ନିଜ ସମ୍ପର୍କୀୟଙ୍କୁ ମନେ ପକାଇ କାନ୍ଦନ୍ତି । ଏହା ବି ଆଶ୍ଚର୍ଯ୍ୟ ଅଟେ ନା ! ଏ ଲୋକେ ଅତୀତ କାଳକୁ ବର୍ତ୍ତମାନ କାଳରେ ଆଣନ୍ତି । ଏହି ଭାରତୀୟ ମାନଙ୍କୁ ବି ଧନ୍ୟ ନା ! ଅତୀତ କାଳକୁ ବର୍ତ୍ତମାନ କାଳରେ ଆଣନ୍ତି ଏବଂ ସେ ପ୍ରୟୋଗ ଆମକୁ ଦେଖାନ୍ତି !

## କଳ୍ପାନ୍ତ ର ପରିଣାମ

ଏ ଥରେ ଯଦି ଏମିତି କଳ୍ପାନ୍ତ କଲ ତେବେ 'କଳ୍ପ'ର ଅନ୍ତ ପର୍ଯ୍ୟନ୍ତ ଭଟକିବାର ହୋଇଗଲା । ଏକ ପୁରା କଳ୍ପର ଅନ୍ତ ପର୍ଯ୍ୟନ୍ତ ଭଟକିବାର ହେଲା ଏହା ।

## ସେ 'ଲିକେଜ୍' କରିବା କଥା ନୁହେଁ

**ପ୍ରଶ୍ନକର୍ତ୍ତା :** ନରସିଂହ ମେହଟା, ତାଙ୍କ ପତ୍ନୀଙ୍କ ମୃତ୍ୟୁ ହେଲା ସେତେବେଳେ *'ଭଲୁ ଥୟୁଂ ଭାଂଗୀ ଜଞ୍ଜାଳ'*(ଭଲ ହେଲା ଛୁଟିଲା ଜଞ୍ଜାଳ) କହି ଉଠିଲେ, ତେବେ ତାହା କ'ଣ କୁହାଯିବ ?

**ଦାଦାଶ୍ରୀ :** କିନ୍ତୁ ସେ ବାଉଳା ହୋଇ କହି ଉଠିଲେ ଯେ *'ଭଲୁ ଥୟୁଂ ଭାଂଗୀ ଜଞ୍ଜାଳ'*। ଏହି କଥା ମନରେ ରଖିବାକୁ ହୁଏ ଯେ 'ଜଞ୍ଜାଳ ଛୁଟିଗଲା।' ତାହା ମନରୁ 'ଲିକେଜ୍' ନ ହେବା ଉଚିତ । କିନ୍ତୁ ଏ ତ ମନରୁ 'ଲିକେଜ୍' ହୋଇ ବାହାରକୁ ବାହରି ଗଲା । ମନରେ ରଖିବାକୁ ଥିବା ଜିନିଷ ପ୍ରକାଶ କରି ଦିଅନ୍ତି, ତେବେ ସେମାନେ ବାଉଳା ମଣିଷ କୁହାଯାନ୍ତି ।

## ଜ୍ଞାନୀ ହୋଇଥାନ୍ତି ବହୁତ ବିବେକୀ

ଆଉ 'ଜ୍ଞାନୀ' ବାଉଳା ନୁହଁନ୍ତି । ଜ୍ଞାନୀ ବହୁତ ସମଝଦାର ଅଟନ୍ତି । ମନରେ ସବୁକିଛି ହୁଏ ଯେ 'ଭଲ ହେଲା ଛୁଟିଲା ଜଞ୍ଜାଳ' କିନ୍ତୁ ବାହାରେ କ'ଣ କୁହନ୍ତି ? ଆରେରେ, ବହୁତ ଖରାପ ହେଲା । ଏ ତ ମୁଁ ଏକୁଟିଆ ଏବେ କ'ଣ କରିବି? ! ଏମିତି ବି କୁହନ୍ତି । ନାଟକ କରନ୍ତି । ଏହି ଜଗତ ତ ସ୍ୱୟଂ ନାଟକ ହିଁ ଅଟେ । ଏଥିପାଇଁ ଭିତରେ ଜାଣ ଯେ 'ଭଲ ହେଲା ଛୁଟିଲା ଜଞ୍ଜାଳ' କିନ୍ତୁ ବିବେକରେ ରହିବା ଉଚିତ । 'ଭଲ ହେଲା ଛୁଟିଲା ଜଞ୍ଜାଳ, ସୁଖରେ ଭଜିବା ଶ୍ରୀ ଗୋପାଳ' ଏପରି କୁହନ୍ତି ନାହିଁ । ଏଭଳି ଅବିବେକ ତ କେଉଁ ବାହାରବାଲା ବି କରେ ନାହିଁ । ଶତ୍ରୁ ହୋଇଥିବ, ତଥାପି ବିବେକ ସହ ବସେ, ଶୋକବାଲା ମୁହଁ କରି ବସେ ! ମୋତେ ଶୋକ ଅବା ଅନ୍ୟ କିଛି ବି ହୁଏ ନାହିଁ, ତଥାପି ବାଥରୁମ୍‌ରେ ଯାଇ ପାଣି ଲଗାଇ, ଆସି ଆରାମରେ ବସେ । ଏହା ଅଭିନୟ ଅଟେ । ଦି ଓ୍ୱାର୍ଲ୍ଡ ଇଜ୍ ଦି ଡ୍ରାମା ଇଟସେଲ୍ଫ, (ସଂସାର ସ୍ୱୟଂ ଏକ ନାଟକ ଅଟେ) ତୁମକୁ କେବଳ ନାଟକ ହିଁ କରିବାର ଅଛି, ଅଭିନୟ ହିଁ କରିବାର ଅଛି, କିନ୍ତୁ ଅଭିନୟ 'ସିନ୍ସିୟରଲୀ' କରିବାର ଅଛି ।

## ଜୀବ ଭଟକେ ତେର ଦିନ ?

**ପ୍ରଶ୍ନକର୍ତ୍ତା :** ମୃତ୍ୟୁ ପରେ ତେର ଦିନର ରେସ୍ଟହାଉସ୍ ହୋଇଥାଏ, ଏପରି କୁହାଯାଏ ?

**ଦାଦାଶ୍ରୀ :** ତେର ଦିନର ତ ଏହି ବ୍ରାହ୍ମଣମାନଙ୍କୁ ହୋଇଥାଏ । ମରିବା ବାଲାକୁ କ'ଣ ? ସେ ବ୍ରାହ୍ମଣ ଏପରି କୁହନ୍ତି ଯେ ରେସ୍ଟହାଉସ୍ ଚାଲିଛି । ଏ ଘର ଉପରେ ବସି ରହିବ, ଆଙ୍ଗୁଳି ଯେତିକି, ଆଉ ଦେଖୁଥିବ । ଆରେ ମୂର୍ଖ, ଦେଖୁଥାଏ କ'ଣ ପାଇଁ? କିନ୍ତୁ ଦେଖ ତାଙ୍କର ତୋଫାନ, ଦେଖ ତୋଫାନ! ଏତିକି ଆଙ୍ଗୁଳି ଯେତିକି ହିଁ ଅଟେ, କୁହନ୍ତି, ଆଉ ଟାଇଲି ଉପରେ ବସି ରହିଥାଏ । ଆଉ ଆମ ଲୋକେ ସତ ମାନନ୍ତି, ଆଉ ଏପରି ସତ ନ ମାନନ୍ତେ, ତେବେ ତେରଦିନିଆ କରନ୍ତେ ନାହିଁ ଏ ଲୋକେ । ନହେଲେ ଏ ଲୋକେ ତେରଦିନିଆ ଇତ୍ୟାଦି କିଛି ବି କରନ୍ତେ ନାହିଁ ।

**ପ୍ରଶ୍ନକର୍ତ୍ତା :** ଗରୁଡ଼ ପୁରାଣରେ ଲେଖା ଅଛି ଯେ ଆତ୍ମା ଆଙ୍ଗୁଳି ଯେତିକି ହିଁ ଅଟେ ।

**ଦାଦାଶ୍ରୀ :** ହଁ, ତାହାର ନାଁ ହିଁ ଗରୁଡ଼ ପୁରାଣ ଅଟେ ନା ! ପୁରୁଣା ଅଟେ । ଆଙ୍ଗୁଳି ଯେତିକି ଆତ୍ମା, ସେଥିପାଇଁ ପ୍ରାପ୍ତି ହେଉ ନାହିଁ ନା ଏବଂ ଦିନ ସରୁ ନାହିଁ । ଶୁକ୍ରବାର ସରୁ ନାହିଁ । ଏଭ୍ରୀ ଡେ ଫ୍ରାଇଡେ ! କରିବାକୁ ଗଲେ ସାଇଣ୍ଟିଫିକ୍, ହେତୁ ସାଇଣ୍ଟିଫିକ୍ ଥିଲା, କିନ୍ତୁ ଥିଙ୍କିଙ୍ଗ୍(ଚିନ୍ତାଧାରା) ସବୁ ବିଗିଡ଼ି ଗଲା । ଏ ଲୋକେ ସେହି ନାଁରେ କ୍ରିୟାସବୁ କଲେ ଆଉ କ୍ରିୟା କରିବା ପୂର୍ବରୁ ବ୍ରାହ୍ମଣଙ୍କୁ ଦାନ ଦେଉଥିଲେ । ସେତେବେଳେ ଦାନ କରିବା ଯୋଗ୍ୟ ହିଁ ବ୍ରାହ୍ମଣ ଥିଲେ । ସେ ବ୍ରାହ୍ମଣଙ୍କୁ ଦାନ ଦେଲେ ପୁଣ୍ୟ ବନ୍ଧା ହେଉଥିଲା । ଏବେ ତ ଏ ସବୁ ଜର୍ଜରିତ ହୋଇଗଲାଣି । ବ୍ରାହ୍ମଣ ଏଠାରୁ ପଲଙ୍କ ନେଇଯାନ୍ତି, ତାହାର ସୌଦା ପୂର୍ବରୁ କରା ହୋଇଥାଏ ଯେ ବାଇଶି ଟଙ୍କାରେ ତୋତେ ଦେବି । ଗଦିର ସୌଦା କରା ହୋଇଥାଏ, ଚାଦରର ସୌଦା କରା ହୋଇଥାଏ । ଆମେ ଅଲଗା ସବୁ ଦିଅନ୍ତି, କପଡ଼ା ସାଧନ ଇତ୍ୟାଦି ସବୁ, ତାହା ମଧ୍ୟ ବିକି ଦିଅନ୍ତି ସମସ୍ତେ । ଏମିତିରେ ସେଠି କିଭଳି ସବୁ ଆତ୍ମାକୁ ପହଞ୍ଚିବ, ମାନିନେଲେ ଲୋକେ ?

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ଏବେ ତ ଅନେକ ଲୋକ ଏପରି କହୁଛନ୍ତି, ବ୍ରାହ୍ମଣଙ୍କୁ କହି ଦିଅନ୍ତି ଯେ ତୁ ସବୁ ନେଇ ଆସିବୁ ଆଉ ମୁଁ ନିର୍ଦ୍ଧାରିତ ପଇସା ଦେଇ ଦେବି ।

**ଦାଦାଶ୍ରୀ :** ତାହା ତ ଆଜି ନୁହେଁ, କେତେ ବର୍ଷରୁ କରୁଛନ୍ତି । ନିର୍ଦ୍ଧାରିତ ପଇସା ଦେଇ ଦେବି, ତୁ ନେଇ ଆସିବୁ । ଆଉ ସେ ଅନ୍ୟର ଦିଆ ହୋଇଥିବା ଖଟିଆ ଥାଏ ତାହା ନେଇ ଆସେ ! କୁହ ଏବେ ! ତଥାପି ଲୋକଙ୍କୁ ମାନିବାକୁ ହେଉ ନାହିଁ, ତଥାପି ଗାଡ଼ି ତ ସେମିତି ଚାଲୁ ହିଁ ରହିଛି । ଜୈନ ଏପରି କରନ୍ତି ନାହିଁ । ଜୈନ ବଡ଼ ପକ୍କା ଅଟନ୍ତି, ଏମିତି-ସେମିତି କରନ୍ତି ନାହିଁ । ଏମିତି-ସେମିତି କିଛି ନାହିଁ ମଧ୍ୟ । ଏଠୁ ଆତ୍ମା ବାହାରିଲା, ତେବେ ସିଧା ତା' ଗତିରେ ଯାଏ, ଯୋନି ପ୍ରାପ୍ତ ହୋଇଯାଏ ।

## ମରିବାବାଲାକୁ ନାହିଁ କିଛି ନେବା-ଦେବା

**ପ୍ରଶ୍ନକର୍ତ୍ତା :** ମରିବାବାଲା ପଛରେ କିଛି ଭଜନ-କୀର୍ତ୍ତନ କରିବା କଥା ନା ନୁହେଁ ? ତାହାଦ୍ୱାରା କ'ଣ ଫାଇଦା ହୋଇଥାଏ ?

**ଦାଦାଶ୍ରୀ :** ମରିବାବାଲାକୁ କିଛି ନେବା-ଦେବା ନାହିଁ ।

**ପ୍ରଶ୍ନକର୍ତ୍ତା :** ତେବେ ପୁଣି ଏ ଆମର ଧାର୍ମିକ ବିଧିସବୁ ଅଛି, ମୃତ୍ୟୁ ସମୟରେ ଯେଉଁ ସବୁ ବିଧି କରାଯାଏ, ତାହା ଠିକ ଅଟେ ନା ନୁହେଁ ?

**ଦାଦାଶ୍ରୀ :** ଏଥିରେ ଏକ ଅକ୍ଷର ବି ସତ୍ୟ ନାହିଁ । ଏ ତ ସେ ଗଲେ, ମାନେ ଗଲେ । ଲୋକେ ନିଜକୁ ନିଜେ କରନ୍ତି ଆଉ ଯଦି ଏପରି କହିବା ଯେ ନିଜ ପାଇଁ କର ନା ! ତେବେ କୁହନ୍ତି, 'ନା ଭାଇ, ଫୁରସତ୍ ନାହିଁ ମୋତେ ।' ଯଦି ପିତାଜୀଙ୍କ ପାଇଁ କରିବା ପାଇଁ କହିବା, ତେବେ ବି କରିବେ ନାହିଁ ଏପରି ଅଟନ୍ତି ଏମାନେ । କିନ୍ତୁ ପଡ଼ୋଶୀ କୁହନ୍ତି, 'ଆରେ ମୂର୍ଖ, ତୋ ବାପର କର, ତୋ ବାପର କର !' ତାହା ତ ପଡ଼ୋଶୀ ମାରି-ପିଟି କରାନ୍ତି !

**ପ୍ରଶ୍ନକର୍ତ୍ତା :** ତେବେ ଏ ଗରୁଡ଼ ପୁରାଣ ବସାନ୍ତି, ତାହା କ'ଣ ?

**ଦାଦାଶ୍ରୀ :** ସେ ଗରୁଡ଼ ପୁରାଣ ତ, ସେମାନେ ଯେଉଁମାନେ କାନ୍ଦୁଥାନ୍ତି ନା,

ସେମାନେ ଗରୁଡ଼ ପୁରାଣରେ ଯାଆନ୍ତି, ଅର୍ଥାତ ଶାନ୍ତ କରିବାର ରାସ୍ତା ଅଟେ ଏସବୁ ।

## ସେସବୁ ବାଃ-ବାଃ ପାଇଁ

**ପ୍ରଶ୍ନକର୍ତ୍ତା :** ଏ ମୃତ୍ୟୁ ପରେ ବାରଦିନିଆ କରନ୍ତି, ତେରଦିନିଆ କରନ୍ତି, କଂସାବାସନ ବାଣ୍ଟନ୍ତି, ଭୋଜି କରନ୍ତି, ତାହାର ମହତ୍ତ୍ୱ କେତେ ଅଛି ?

**ଦାଦାଶ୍ରୀ :** ତାହା ଅନିବାର୍ଯ୍ୟ ବସ୍ତୁ ନୁହେଁ । ତାହା ତ ପଛରେ ବାଃ-ବାଃ ପାଇଁ କରାନ୍ତି । ଆଉ ଯଦି ଖର୍ଚ୍ଚ ନକରେ ନା ତେବେ ଲୋଭୀ ହୋଇ ଚାଲିଥାଏ, ଦୁଇ ହଜାର ଟଙ୍କା ଦେଇଥିବ ତେବେ ଖିଆ-ପିଆ କରେ ନାହିଁ ଆଉ ଦୁଇ ହଜାର ପଛରେ ପଇସା ଜୋଡ଼ି ଚାଲିଥାଏ । ଏଣୁ ଏପରି ଯଦି ଖର୍ଚ୍ଚ କରେ ତେବେ ପୁଣି ମନ ଶୁଦ୍ଧ ହୋଇଯାଏ ଏବଂ ଲୋଭ ବଢ଼େ ନାହିଁ । କିନ୍ତୁ ତାହା ଅନିବାର୍ଯ୍ୟ ବସ୍ତୁ ନୁହେଁ । ପାଖରେ ଅଛି ତେବେ କର, ନଥିବ ତେବେ କିଛି କଥା ନାହିଁ ।

## ଶ୍ରାଦ୍ଧର ସଠିକ ସମଝ

**ପ୍ରଶ୍ନକର୍ତ୍ତା :** ଏ ଶ୍ରାଦ୍ଧରେ ପିତୃପୁରୁଷ ମାନଙ୍କୁ ଯେଉଁ ଆହ୍ୱାନ ହୁଏ, ତାହା ଠିକ ଅଟେ ? ସେହି ସମୟରେ ଶ୍ରାଦ୍ଧ ପକ୍ଷରେ ପିତୃ ଆସନ୍ତି ? ଆଉ କାଉକୁ ଭୋଜନ ଖୁଆନ୍ତି, ତାହା କ'ଣ ?

**ଦାଦାଶ୍ରୀ :** ଏପରି ଅଟେ, ଯଦି ପୁଅ ସାଙ୍ଗରେ ସମ୍ବନ୍ଧ ଥିବ ତେବେ ଆସିବ । ସାରା ସମ୍ବନ୍ଧ ପୁରା ହୁଏ, ତାହା ପରେ ତ ଦେହ ଛୁଟେ । ଘରବାଲାଙ୍କ ସହିତ କୌଣସି ପ୍ରକାରର ସମ୍ବନ୍ଧ ରହିଲା ନାହିଁ, ସେଥିପାଇଁ ଏ ଦେହ ଛୁଟିଯାଏ । ପରେ କେହି ମିଳେ ନାହିଁ । ପରେ ନୂଆ ସମ୍ବନ୍ଧ ଯଦି ବନ୍ଧା ହୋଇଥିବ, ତେବେ ପୁଣି ଜନ୍ମ ହୁଏ ସେଠାରେ, ବାକି କେହି ଆସନ୍ତି ନାହିଁ । ପିତୃ କାହାକୁ କହିବା ? ପୁଅକୁ କହିବା ନା ବାପକୁ କହିବା ? ପୁଅ ପିତୃ ହେବାର ଅଛି ଆଉ ବାପ ବି ପିତୃ ହେବାର ଅଛି ଆଉ ଜେଜ ବି ପିତୃ ହେବାର ଅଛି, କାହାକୁ କହିବା ପିତୃ ?

**ପ୍ରଶ୍ନକର୍ତ୍ତା :** ମନେ ପକାଇବା ପାଇଁ ହିଁ ଏ କ୍ରିୟା ସବୁ ରଖାଯାଇଛି, ଏପରି ନା ?

**ଦାଦାଶ୍ରୀ :** ନା, ମନେ ପକାଇବା ପାଇଁ ବି ନୁହେଁ । ଏ ତ ଆମ ଲୋକେ ମୃତକ ପଛରେ ଧର୍ମ ନାମରେ ଚାରି ଅଣା ବି ଖର୍ଚ୍ଚ କରିବେ ଏପରି ନଥିଲେ । ଏଥିପାଇଁ ପୁଣି ତାଙ୍କୁ ବୁଝାଗଲା ଯେ ଭାଇ, ତୁମ ପିତାଶ୍ରୀ ମରି ଯାଇଛନ୍ତି, ତେବେ କିଛି ଖର୍ଚ୍ଚ କର, କିଛି ଏମିତି କର, ସେମିତି କର । ତେବେ ପୁଣି ତୁମ ପିତାଶ୍ରୀଙ୍କୁ ପହଞ୍ଚିବ । ସେତେବେଳେ ଲୋକେ ବି ତା'କୁ ଗାଳି କରି କୁହନ୍ତି ଯେ, ବାପ ପାଇଁ କିଛି କର ! ଶ୍ରାଦ୍ଧ କର ! କିଛି ଭଲ କାମ କର ! ତେବେ ଏପରି କହି କହି ଦୁଇଶହ-ଚାରିଶହ, ଯାହା ବି ଖର୍ଚ୍ଚ କରାନ୍ତି ଧର୍ମ ନାମରେ, ସେତିକି ତାହାର ଫଳ ମିଳେ । ବାପ ନାଁ'ରେ କରେ ଏବଂ ପରେ ଫଳ ମିଳେ । ଯଦି ବାପର ନାଁ ନ କହିଥାନ୍ତେ ତେବେ ଏ ଲୋକେ ଚାରି ଅଣା ବି ଖର୍ଚ୍ଚ କରି ନଥାନ୍ତେ । ଅତଃ ଅନ୍ଧବିଶ୍ୱାସ ଉପରେ ଏହି କଥା ଚାଲୁରହିଛି । ତୁମକୁ ବୁଝା ପଡ଼ିଲା ? ବୁଝି ପାରିଲ ନାହିଁ ?

ଏ ବ୍ରତ-ଉପବାସ କରନ୍ତି, ତାହା ସବୁ ଆୟୁର୍ବେଦ ପାଇଁ ଅଟେ, ଆୟୁର୍ବେଦ ପାଇଁ । ଏ ବ୍ରତ-ଉପବାସ ଆଦି କରନ୍ତି ମାନେ ଆୟୁର୍ବେଦରେ କିଭଳି ଫାଇଦା ହେବ, ସେଥିପାଇଁ ପ୍ରବନ୍ଧ କରିଛନ୍ତି ଏ ସବୁ । ଆଗର ଲୋକମାନେ ଭଲ ପ୍ରବନ୍ଧ କରିଛନ୍ତି । ଏହି ମୂର୍ଖ ମଣିଷଙ୍କୁ ବି ଫାଇଦା ହେବ, ସେଥିପାଇଁ ଅଷ୍ଟମୀ, ଏକାଦଶୀ, ପଞ୍ଚମୀ ଏପରି ସବୁ କରିଛନ୍ତି ଆଉ ଏ ଶ୍ରାଦ୍ଧ କରନ୍ତି ନା ! ଅତଃ ଶ୍ରାଦ୍ଧ, ତାହା ତ ବହୁତ ଭଲ ହେତୁ ପାଇଁ ରଖାଯାଇଛି ।

**ପ୍ରଶ୍ନକର୍ତ୍ତା :** ଦାଦାଶ୍ରୀ, ଶ୍ରାଦ୍ଧରେ କାଉକୁ ଖାଇବାକୁ ଦିଅନ୍ତି, ତାହାର କ'ଣ ତାତ୍ପର୍ଯ୍ୟ ଅଛି ? ଅଜ୍ଞାନତା କୁହାଯିବ ତାହା ?

**ଦାଦାଶ୍ରୀ :** ନା, ଅଜ୍ଞାନତା ନୁହେଁ । ଏହା ଏକ ପ୍ରକାର ଲୋକମାନେ ଶିଖାଇଛନ୍ତି ଯେ ଶ୍ରାଦ୍ଧ କର୍ମ ଏହିଭଳି ହୁଏ । ଆମର ଏଠାରେ ଶ୍ରାଦ୍ଧ କରିବାର ତ ବଡ଼ ଇତିହାସ ଅଛି । ଏହାର କ'ଣ କାରଣ ଥିଲା ? ଶ୍ରାଦ୍ଧ କେବେଠୁ ଆରମ୍ଭ ହୁଏ ନା ଭାଦ୍ରବ ଶୁକ୍ଳପକ୍ଷ ପୂର୍ଣ୍ଣିମାରୁ ନେଇ ଭାଦ୍ରବ କୃଷ୍ଣପକ୍ଷ ଅମାବାସ୍ୟା ପର୍ଯ୍ୟନ୍ତ ଶ୍ରାଦ୍ଧପକ୍ଷ କୁହାଯାଏ । ଷୋହଳ ଦିନର ଶ୍ରାଦ୍ଧ ! ଏବେ ଏ ଶ୍ରାଦ୍ଧ କ'ଣ ପାଇଁ ଏ ଲୋକମାନେ ଦେଇଛନ୍ତି ? ବହୁତ ବୁଦ୍ଧିମାନ ପ୍ରଜା ଅଟନ୍ତି ! ଏଣୁ ଶ୍ରାଦ୍ଧ ଯେଉଁ ଦେଇଛନ୍ତି, ତାହା ତ ସବୁ ବୈଜ୍ଞାନିକ

ପ୍ରକ୍ରିୟା ଅଟେ । ଆମ ଇଣ୍ଡିୟାରେ ଆଜିକୁ କିଛି ବର୍ଷ ପୂର୍ବରୁ ଗାଁ'ମାନଙ୍କରେ ପ୍ରତ୍ୟେକ ଘରେ ଗୋଟିଏ ଖଟିଆ ତ ବିଛା ହୋଇ ରହୁଥିଲା, ମ୍ୟାଲେରିଆବାଲା ଏକ-ଦୁଇ ଲୋକ ତ ଖଟିଆରେ ପଡ଼ି ରହୁଥିଲେ । କେଉଁ ମାସରେ ? ତେବେ କହିବା, ଭାଦ୍ରବ ମାସରେ । ଏଣୁ ଆମେ ଯଦି ଗାଁକୁ ଯିବା, ତେବେ ପ୍ରତ୍ୟେକ ଘର ବାହାରେ ଗୋଟେ ଅଧେ ଖଟିଆ ପଡ଼ିଥାଏ ଆଉ ସେଥିରେ ରୋଗୀ ଶୋଇ ରହିଥାଏ, ଘୋଡ଼େଇ ହୋଇ । ଜ୍ୱର ହେଉଥିଲା, ମ୍ୟାଲେରିଆ ଜ୍ୱରରେ ଗ୍ରସ୍ତ । ଭାଦ୍ରବ ମାସରେ ମଶା ବହୁତ ହେଉଥିଲେ, ଏଣୁ ମ୍ୟାଲେରିଆ ବହୁତ ବ୍ୟାପୁଥିଲା, ଅର୍ଥାତ୍ ମ୍ୟାଲେରିଆ ପିତ୍ତଜ୍ୱର କୁହାଯାଏ । ତାହା ବାୟୁ ବା କଫ ଜ୍ୱର ନୁହେଁ । ପିତ୍ତଜ୍ୱର, ମାନେ ଏତେ ଅଧିକ ପିତ୍ତ ବଢ଼ିଯାଏ । ବର୍ଷାଦିନ ଏବଂ ପିତ୍ତ ଜ୍ୱର ଆଉ ପୁଣି ମଶା କାମୁଡ଼ନ୍ତି । ଯାହାକୁ ପିତ୍ତ ଅଧିକ ଥାଏ ତା'କୁ କାମୁଡ଼ନ୍ତି । ଏଣୁ ମଣିଷ, ଏ ସନ୍ଧାନକାରୀମାନେ ଏହା ସନ୍ଧାନ କଲେ ଯେ ହିନ୍ଦୁସ୍ତାନରେ କିଛି ରାସ୍ତା ବାହାର କର, ନହେଲେ ଲୋକସଂଖ୍ୟା ଅଧା ହୋଇଯିବ । ଏବେ ତ ଏ ମଶା କମି ଯାଇଛନ୍ତି, ନହେଲେ ମଣିଷ ଜୀବିତ ନଥାନ୍ତା । ଏଣୁ ପିତ୍ତଜ୍ୱରକୁ ଶମନ କରିବା ପାଇଁ, ଏପରି ଶମନ କ୍ରିୟା କରିବା ପାଇଁ ଖୋଜି ବାହାର କରିଥିଲେ ଯେ ଏ ଲୋକେ ଦୁଧପାକ ବା ଖିରି, କ୍ଷୀର ଏବଂ ଚିନି ଇତ୍ୟାଦି ଖାଇବେ ତେବେ ପିତ୍ତ କମିବ ଏବଂ ମ୍ୟାଲେରିଆରୁ କିଛିଟା ମୁକ୍ତି ମିଳିବ । ଏବେ ଏ ଲୋକେ ଘରର କ୍ଷୀର ଥିବ, ତଥାପି ଖିରି-ଫିରି ବନାଉ ନଥିଲେ, ଦୁଧପାକ ଖାଉ ନଥିଲେ ଏମିତି ଏ ଲୋକେ ! ବହୁତ ନର୍ମାଲ ନା( !), ଏଣୁ କ'ଣ ହେବ, ତାହା ତୁମେ ଜାଣିଛ ? ଏବେ ଏ ଦୁଧପାକ ସବୁଦିନ ଖାଇବେ କିପରି ?

ଏବେ ବାପକୁ ଏକ ଅକ୍ଷର ବି ପହଞ୍ଚେ ନାହିଁ । କିନ୍ତୁ ଏ ଲୋକମାନେ ସନ୍ଧାନ କରିଥିଲେ ଯେ ଏ ହିନ୍ଦୁସ୍ତାନର ଲୋକେ ଚାରି ଅଣା ବି ଧର୍ମ କରିବେ, ଏପରି ନୁହଁନ୍ତି । ଏମିତି ଲୋଭୀ ଅଟନ୍ତି ଯେ ଦୁଇ ଅଣା ବି ଧର୍ମ କରିବେ ନାହିଁ । ସେଥିପାଇଁ ଏମିତି ଓଲଟା କାନ ଧରାଇଲେ ଯେ 'ତୋ ବାପର ଶ୍ରାଦ୍ଧ ତ କର !' ଏମିତି ସବୁ କହିବାକୁ ଆସନ୍ତି ନା ! ଏଣୁ ଶ୍ରାଦ୍ଧର ନାମ ଏହିଭଳି ଦେଇଦେଲେ । ସେଥିପାଇଁ ଲୋକମାନେ ପୁଣି ଆରମ୍ଭ କରିଦେଲେ ଯେ ବାପର ଶ୍ରାଦ୍ଧ ତ କରିବାକୁ ପଡ଼ିବ ନା ! ଆଉ ମୋ ଭଳି ଯଦି କେହି ଜିଦଖୋର ହୋଇଥିବ ଏବଂ ଶ୍ରାଦ୍ଧ କରୁ ନଥିବ ତେବେ କ'ଣ କୁହନ୍ତି ? 'ବାପର ଶ୍ରାଦ୍ଧ ବି କରୁନାହିଁ ।' ଆଖ-ପାଖ ବାଲା କିଚ୍-କିଚ୍ କରନ୍ତି, ଏଣୁ ପୁଣି ଶ୍ରାଦ୍ଧ

କରିଦିଏ । ତେବେ ପୁଣି ଭୋଜନ କରାଇ ଦିଏ ।

ସେତେବେଳେ ପୂର୍ଣ୍ଣିମା ଦିନରୁ ଖିରି ଖାଇବାକୁ ମିଳେ ଏବଂ ପନ୍ଦର ଦିନ ପର୍ଯ୍ୟନ୍ତ ଖିରି ମିଳୁଥାଏ । କାହିଁକିନା ଆଜି ମୋ ଘରେ, କାଲି ତୁମ ଘରେ ଆଉ ଲୋକଙ୍କୁ ମଧ୍ୟ ଅନୁକୂଳ ହୋଇଗଲା ଯେ, 'ଚଳିବ, ଏବେ ପାଳି-ପାଳି ଖାଇବାର ଅଛି ନା! ଠକିଯିବାର ନାହିଁ ଆଉ ପରେ ଖାଇବାକୁ ଦେବା କାଉକୁ ।' ଏହିଭଳି ସନ୍ଧାନ କରିଥିଲେ । ତାହାଦ୍ୱାରା ପିତ୍ତ ସବୁ ଥମିଯାଏ । ତେବେ ଏଥିପାଇଁ ଏ ଲୋକମାନେ ଏହି ବ୍ୟବସ୍ଥା କରିଥିଲେ । ଏଣୁ ଆମ ଲୋକେ ସେତେବେଳେ କ'ଣ କହୁଥିଲେ ଯେ ଷୋହଳ ଶ୍ରାଦ୍ଧ ପରେ ଯଦି ଜୀବିତ ରହିଲା ତେବେ ନବରାତ୍ରିରେ ଆସିଲା !

## ହସ୍ତାକ୍ଷର ବିନା ମରଣ ବି ନାହିଁ

କିନ୍ତୁ ପ୍ରକୃତିର ନିୟମ ଏପରି ଅଟେ ଯେ କୌଣସି ବି ମନୁଷ୍ୟକୁ ଏଠାରୁ ନେଇ ଯାଇ ପାରିବେ ନାହିଁ । ମରିବାବାଲାର ହସ୍ତାକ୍ଷର ବିନା ତା'କୁ ଏଠାରୁ ନେଇ ପାରିବେ ନାହିଁ । ଲୋକେ ହସ୍ତାକ୍ଷର କରୁଥିବେ କି ? ଏପରି କୁହନ୍ତି ନା ଯେ 'ହେ ଭଗବାନ, ଏଠୁ ଯିବା ହେବ ତେବେ ଭଲ' ଏବେ ଏପରି କାହିଁକି କୁହନ୍ତି ? ତାହା ତୁମେ ଜାଣିଛ ? କେବେ ଏମିତି ଭିତରେ ଦୁଃଖ ହୁଏ, ତେବେ ପୁଣି ଦୁଃଖ ସହି ନପାରି କୁହେ ଯେ 'ଏ ଦେହ ଛୁଟିଯିବ ତେବେ ଭଲ ।' ସେହିକ୍ଷଣି ହସ୍ତାକ୍ଷର କରାଇ ନିଏ ।

## ତାହା ପୂର୍ବରୁ କରିବ 'ମୋତେ' ସ୍ମରଣ

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ଏପରି ଶୁଣିଛି ଯେ ଆତ୍ମହତ୍ୟା ପରେ ସେହିପରି ସାତ ଜନ୍ମ ହୁଏ, ଏହି କଥା ସତ ?

**ଦାଦାଶ୍ରୀ :** ଯେଉଁ ସଂସ୍କାର ପଡ଼େ, ତାହା ସାତ-ଆଠ ଜନ୍ମ ପରେ ଯାଏ । ଏଣୁ କିଛି ଖରାପ ସଂସ୍କାର ପଡ଼ିବାକୁ ଦେବ ନାହିଁ । ଖରାପ ସଂସ୍କାର ଠାରୁ ଦୂରେଇ ରହିବ । ହଁ, ଏଠି ପଛେ ଯେତେ ଦୁଃଖ ହେଉ ତାହା ସହନ କରିବ, କିନ୍ତୁ ଗୁଳି ମାରିବ ନାହିଁ, ଆତ୍ମହତ୍ୟା କରିବ ନାହିଁ । ଏଥିପାଇଁ ବଡ଼ୋଦା ସହରରେ ଆଜିଠୁ କିଛି ବର୍ଷ ପୂର୍ବେ ସମସ୍ତଙ୍କୁ କହି ଦେଇଥିଲି ଯେ ଆତ୍ମହତ୍ୟାର ବିଚାର ଆସେ ତେବେ ମୋତେ

ସ୍ମରଣ କରିବ ଏବଂ ମୋ ପାଖକୁ ଆସିଯିବ । ଏଭଳି ମଣିଷ ଯଦି ହୋଇଥିବେ ନା, ଜୋଖିମବାଲା ମଣିଷ, ସେମାନଙ୍କୁ କହି ରଖୁଥିଲି । ସେ ପୁଣି ମୋ ପାଖକୁ ଆସେ, ତେବେ ତା'କୁ ବୁଝାଇ ଦିଏ । ପରଦିନ ଆତ୍ମହତ୍ୟା ବନ୍ଦ ହୋଇଯାଏ । ୧୯୫୧ ପରେ ସମସ୍ତଙ୍କୁ ଖବର କରି ଦେଇଥିଲି ଯେ ଯାହାକୁ ଆତ୍ମହତ୍ୟା କରିବାକୁ ଥିବ, ତେବେ ସେ ମୋତେ ଭେଟୁ, ଆଉ ପରେ କରୁ । କେହି ଆସେ ଯେ ମୋତେ ଆତ୍ମହତ୍ୟା କରିବାର ଅଛି ତେବେ ତା'କୁ ମୁଁ ବୁଝାଏ । ଆଖପାଖର 'କଜେଜ୍'(କାରଣ), ସର୍କଲ, ଆତ୍ମହତ୍ୟା କରିବା ପରି ଅଟେ ନା ନକରିବା ପରି, ସବୁ ତା'କୁ ବୁଝାଇ ଦିଏ ଆଉ ତା'କୁ ପଛକୁ ଫେରାଇ ଆଣେ ।

## ଆତ୍ମହତ୍ୟାର ଫଳ

**ପ୍ରଶ୍ନକର୍ତ୍ତା :** କେହି ମଣିଷ ଯଦି ଆତ୍ମହତ୍ୟା କରେ ତେବେ ତା'ର କେଉଁ ଗତି ହୁଏ ? ଭୂତ-ପ୍ରେତ ହୁଏ ?

**ଦାଦାଶ୍ରୀ :** ଆତ୍ମହତ୍ୟା କରିବା ଦ୍ୱାରା ତ ପ୍ରେତ ହୁଏ ଏବଂ ପ୍ରେତ ହୋଇ ଭଟକିବାକୁ ପଡ଼େ । ଏଣୁ ଆତ୍ମହତ୍ୟା କରି ଓଲଟା *ଉପାଧି* ଆପଣେଇ ନିଏ । ଥରେ ଆତ୍ମହତ୍ୟା କରେ, ତାହା ପରେ କେତେ ଜନ୍ମ ପର୍ଯ୍ୟନ୍ତ ତାହାର ପ୍ରତିଘୋଷ ଗୁଜଂନ ହେଉଥାଏ ! ଆଉ ଏ ଯେଉଁ ଆତ୍ମହତ୍ୟା କରେ ତାହା କିଛି ନୂଆ କରୁନାହିଁ । ତାହା ତ ପୂର୍ବ ଜନ୍ମରେ ଆତ୍ମହତ୍ୟା କରିଥିଲା, ତାହାର ପ୍ରତିଘୋଷରୁ କରେ । ଏ ଯେଉଁ ଆତ୍ମହତ୍ୟା କରେ, ତାହା ତ ପୂର୍ବରେ କରିଥିବା ଆତ୍ମଘାତ କର୍ମର ଫଳ ଆସେ । ଏଣୁ ନିଜେ ନିଜେ ହିଁ ଆତ୍ମହତ୍ୟା କରେ । ଏଭଳି ପ୍ରତିଘୋଷ ପଡ଼ି ରହିଥାଏ ଯେ ସେ ତାହାକୁ ତାହା ହିଁ କରି ଆସୁଥାଏ । ଏଣୁ ନିଜେ ନିଜେ ଆତ୍ମହତ୍ୟା କରେ ଆଉ ଆତ୍ମହତ୍ୟା ହେବା ପରେ ପୁଣି ଅବଗତି ବାଲା ଜୀବ ହୋଇଯାଏ । ଅବଗତି ଅର୍ଥାତ ଦେହ ବିନା ଭଟକେ । ଭୂତ ହେବା କିଛି ସହଜ ନୁହେଁ । ଭୂତ ତ ଦେବଗତିର ଅବତାର ଅଟେ, ତାହା ସହଜ କଥା ନୁହେଁ । ଭୂତ ତ, ଯଦି ଏଠାରେ କଠୋର ତପ କରିଥିବ, ଅଜ୍ଞାନ ତପ କରିଥିବ, ତେବେ ଭୂତ ହୁଏ; ଯେବେକି ପ୍ରେତ ଅଲଗା ଅଟେ ।

## ବିକଳ୍ପ ବିନା ବଞ୍ଚିହୁଏ ନାହିଁ

**ପ୍ରଶ୍ନକର୍ତ୍ତା :** ଆତ୍ମହତ୍ୟାର ବିଚାର କାହିଁକି ଆସୁଥିବ ?

**ଦାଦାଶ୍ରୀ :** ଭିତରେ ବିକଳ୍ପ ଖତମ ହୋଇଯାଏ, ସେଥିପାଇଁ । ଏ ତ ବିକଳ୍ପର ଆଧାରରେ ବଞ୍ଚି ରହିଥାଏ । ବିକଳ୍ପ ସମାପ୍ତ ହୋଇଯାଏ, ପରେ ଏବେ କ'ଣ କରାଯିବ, ତାହାର କୌଣସି ଦର୍ଶନ ଦେଖାଯାଏ ନାହିଁ, ସେଥିପାଇଁ ପୁଣି ଆତ୍ମହତ୍ୟା କରିବା ପାଇଁ ଭାବେ । ଏଣୁ ଏ ବିକଳ୍ପ ମଧ୍ୟ କାମର ଅଟନ୍ତି !

ସହଜ ବିଚାର ବନ୍ଦ ହୋଇଯାଏ, ସେତେବେଳେ ଏ ସବୁ ଓଲଟା ବିଚାର ଆସେ । ବିକଳ୍ପ ବନ୍ଦ ହେବାକୁ ଥିବ ସେଥିପାଇଁ ଯେଉଁ ସହଜ ବିଚାର ଆସୁଥାଏ, ତାହା ମଧ୍ୟ ବନ୍ଦ ହୋଇଯାଏ । ଘୋର ଅନ୍ଧାର ହୋଇଯାଏ । ପରେ କିଛି ଦେଖାଯାଏ ନାହିଁ ! ସଂକଳ୍ପ ଅର୍ଥାତ 'ମୋର' ଏବଂ ବିକଳ୍ପ ଅର୍ଥାତ 'ମୁଁ' । ଏ ଦୁହେଁ ବନ୍ଦ ହୋଇଯାନ୍ତି, ସେତେବେଳେ ମରିଯିବାର ବିଚାର ଆସେ ।

## ଆତ୍ମହତ୍ୟାର କାରଣ

**ପ୍ରଶ୍ନକର୍ତ୍ତା :** ସେ ଯେଉଁ ତା'କୁ ବୃତ୍ତି ହେଲା, ଆତ୍ମହତ୍ୟା କରିବା ପାଇଁ, ତାହାର ରୁଟ୍(ମୂଳ) କ'ଣ ?

**ଦାଦାଶ୍ରୀ :** ଆତ୍ମହତ୍ୟାର ରୁଟ୍ ତ ଏପରି ହୋଇଥାଏ ଯେ ସେ କେଉଁ ଜନ୍ମରେ ଆତ୍ମହତ୍ୟା କରିଥିବ ତେବେ ତାହାର ପ୍ରତିଘୋଷ ସାତ ଜନ୍ମ ପର୍ଯ୍ୟନ୍ତ ରହିଥାଏ । ଯେପରି ଆମେ ଯଦି ଏକ ବଲ୍ ପକାଇବା, ତିନି ଫୁଟ ଉପରୁ ପକାଇବା, ତେବେ ମନକୁ ମନ ଦ୍ୱିତୀୟ ଥର ଅଢ଼େଇ ଫୁଟ୍ ଉଠି ତଳକୁ ପଡ଼ିବ । ପରେ ଏକ ଫୁଟ୍ ଉଠି ତଳକୁ ପଡ଼େ, ଏପରି ହୁଏ କି ନାହିଁ ? ତିନି ଫୁଟ ପୁରା ଉଠେ ନାହିଁ, ମାତ୍ର ନିଜ ସ୍ୱଭାବରୁ ଅଢ଼େଇ ଫୁଟ୍ ଉଠି ତଳକୁ ପଡ଼େ, ତୃତୀୟ ଥର ଦୁଇ ଫୁଟ ଉଠି ପଡ଼େ, ଚତୁର୍ଥ ଥର ଦେଢ଼ ଫୁଟ ଉଠି ତଳକୁ ପଡ଼େ । ପରେ ଏକ ଫୁଟ ଉଠି ପଡ଼େ । ଏପରି ତାହାର ଗତିର ନିୟମ ହୋଇଥାଏ । ସେହିପରି ପ୍ରକୃତିର ମଧ୍ୟ ନିୟମ ଥାଏ । ସେ ଏ ଆତ୍ମହତ୍ୟା କରେ, ତେବେ ସାତ ଜନ୍ମ ଯାଏଁ ଆତ୍ମହତ୍ୟା କରିବାକୁ ହିଁ ପଡ଼େ । ଏବେ

ସେଥିରେ କମ-ବେଶି ପରିଣାମରୁ ଆତ୍ମହତ୍ୟା ଆମକୁ ପୂର୍ଣ୍ଣ ହିଁ ଦେଖାଯାଏ, ମାତ୍ର ପରିଣାମ କମ ତୀବ୍ରତାବାଲା ହେଉଥାଏ ଏବଂ କମ ହୋଇ-ହୋଇ, ପରିଣାମ ଖତମ ହୋଇଯାଏ ।

## ଅନ୍ତିମ ସମୟରେ...

ସାରା ଜୀବନରେ ଯାହା କରିଥିବ, ମରିବା ସମୟରେ ତାହାର ସାର(ହିସାବ) ଆସେ । ସେ ସାର ୪୫ମିନିଟ୍ ପର୍ଯ୍ୟନ୍ତ ପଢ଼ିଚାଲେ, ପରେ ଦେହ ବାନ୍ଧିହୋଇ ଯାଏ (ପରଜନ୍ମରେ କେଉଁ ଦେହ ମିଳିବ ତାହା ନିଶ୍ଚିତ ହୋଇଯାଏ) । ଫଳରେ ଦୁଇ ଗୋଡ଼ରୁ ଚାରି ଗୋଡ଼ ହୋଇଯାଏ । ଏଠି ରୁଟି ଖାଉ ଖାଉ, ସେଠି ନଡ଼ା ଖାଇବା ପାଇଁ! ଏହି କଳିଯୁଗର ମାହାତ୍ମ୍ୟ ଏପରି ଅଟେ । ଏଣୁ ଏ ମନୁଷ୍ୟତ୍ୱ ପୁଣି ମିଳିବା କଷ୍ଟସାଧ ଅଟେ, ଏପରି ଏହି କଳିଯୁଗର କାଳ... !

**ପ୍ରଶ୍ନକର୍ତ୍ତା :** ଅନ୍ତିମ ସମୟ କାହାକୁ ଜଣାଅଛି ଯଦି କାନ ବନ୍ଦ ହୋଇଯିବ ?

**ଦାଦାଶ୍ରୀ :** ଅନ୍ତିମ ସମୟରେ ତ ଏ ଯାହା ଯାହା ତୁମ ଖାତାରେ ଜମା ଅଛି ନା, ତାହା ଆସେ । ମରଣ ସମୟର ଶେଷ ଘଣ୍ଟା, ଯେଉଁ ଗୁଣସ୍ଥାନ ଆସେ, ତାହା ସାର ଅଟେ ଆଉ ସେ ହିସାବ-କିତାବ(balance sheet) କେବଳ ସାରା ଜୀବନର ନୁହେଁ, ବରଂ ପୂର୍ବରୁ ଯେଉଁ ଜନ୍ମ ନେଇଥାଏ ଏବଂ ଆସନ୍ତା ଜନ୍ମ, ସେ ମଧ୍ୟ ଭାଗର ହିସାବ-କିତାବ ଅଟେ । ସେ ମରଣ ଘଡ଼ିରେ ଆମ ଲୋକେ, କେତେ ସବୁ କାନରେ କୁହାନ୍ତି, 'କୁହ ରାମ, କୁହ ରାମ', ଆରେ ମୂର୍ଖ, ରାମ କାହିଁକି କୁହାଉଛୁ ? ରାମ ତ ଗଲେଣି କେବେଠୁ !

କିନ୍ତୁ ଲୋକମାନେ ଏପରି ଶିଖାଇଛନ୍ତି, ଯେ ଏମିତି କିଛି କରିବ । କିନ୍ତୁ ତାହା ତ ଯଦି ଭିତରେ ପୁଣ୍ୟ ଜାଗ୍ରତ ହେବ, ତେବେ ଏଡ଼ଜଷ୍ଟ ହୁଏ । ଆଉ ସେ ତ ଝିଅକୁ ବାହା କରାଇବାର ଚିନ୍ତାରେ ହିଁ ପଡ଼ି ରହିଥାଏ । ଏ ତିନି ଝିଅ ବାହା ଦେଲି ଆଉ ଏ ଚାରି ନମ୍ବର ରହିଗଲା । ଏ ତିନି ବାହା ଦେଲି ଆଉ ସାନ ଏକୁଟିଆ ରହିଗଲା । ରକମ କଲ, ମାନେ ତାହା ଆଗକୁ ଆସିବ ନିଶ୍ଚୟ । ଆଉ ସେ ପିଲାଦିନେ ଭଲ କରିଥିବା ଆସିବ ନାହିଁ, ବୁଢ଼ାବେଳେ ଭଲ କରିଥିବା ଆସିବ ।

## ପ୍ରକୃତିର କିପରି ସୁନ୍ଦର କାନୁନ୍ !

ଅତଃ ଏଠାରୁ ଯାଏ ତାହା ବି ପ୍ରକୃତିର ନ୍ୟାୟ, ଠିକ ଅଟେ ନା! କିନ୍ତୁ ବୀତରାଗ୍ ସାବଧାନ କରାନ୍ତି ଯେ ଭାଇ ପଚାଷ ବର୍ଷ ହୋଇଗଲା ଏବେ ସମ୍ଭାଳି ଯା !

ପଞ୍ଚସ୍ତରୀ ବର୍ଷର ଆୟୁଷ ହୋଇଥିବ ତେବେ ପଚାଷ ବର୍ଷରେ ପ୍ରଥମ ଫଟୋ ଉଠେ ଆଉ ଷାଠିଏ ବର୍ଷର ଆୟୁଷ ହୋଇଥିବ ତେବେ ଚାଳିଷ ବର୍ଷରେ ଫଟୋ ଉଠେ । ଏକାଅଶୀ ବର୍ଷର ଆୟୁଷ ହୋଇଥିବ ତେବେ ଚଉବନ ବର୍ଷରେ ଫଟୋ ଉଠିଯାଏ । କିନ୍ତୁ ସେପର୍ଯ୍ୟନ୍ତ ଏତେ ଟାଇମ୍ ଫ୍ରି ଅଫ୍ କସ୍ଟ୍ ମିଳେ, ଦୁଇ ତୃତୀୟାଂଶ ଭାଗ ଫ୍ରି ରେ ମିଳେ ଆଉ ଏକ ତୃତୀୟାଂଶ ଭାଗ, ତାହାର ପୁଣି ଫଟୋ ଉଠି ଚାଲିଥାଏ । କାନୁନ ଭଲ ଅଟେ ନା ଜୋର-ଜବରଦସ୍ତି ବାଲା ଅଟେ ? ଜୋର-ଜବରଦସ୍ତି ବାଲା ନୁହେଁ ନା ? ନ୍ୟାୟସଙ୍ଗତ ଅଟେ ନା ? ପ୍ରକୃତି କୁହେ ଦୁଇ ତୃତୀୟାଂଶ କୁଦା-କୁଦି କରିଥିବ, ତାହାର ମୋତେ ଆପତ୍ତି ନାହିଁ, କିନ୍ତୁ ଏବେ ସିଧା ମର ନା ।

### କ୍ଷଣ-କ୍ଷଣ ଭାବ ମରଣ

**ପ୍ରଶ୍ନକର୍ତ୍ତା :** ଦେହର ମୃତ୍ୟୁ ତ କୁହାଯିବ ନା ?

**ଦାଦାଶ୍ରୀ :** ଅଜ୍ଞାନୀ ମଣିଷକୁ ତ ଦୁଇ ପ୍ରକାରର ମରଣ ହୋଇଥାଏ । ପ୍ରତିଦିନ ଭାବ ମରଣ ହୋଇ ଚାଲିଥାଏ । କ୍ଷଣ-କ୍ଷଣ ଭାବ ମରଣ ଏବଂ ପୁଣି ଅନ୍ତତଃ ଦେହର ମୃତ୍ୟୁ ହୁଏ । କିନ୍ତୁ ପ୍ରତିଦିନ ତା'ପାଇଁ ମରଣ, କନ୍ଦାକଟା ପ୍ରତିଦିନ । କ୍ଷଣ-କ୍ଷଣ ଭାବ ମରଣ । ସେଥିପାଇଁ କୃପାଳୁଦେବ ଲେଖିଛନ୍ତି ନା !

*'କ୍ଷଣ-କ୍ଷଣ ଭୟଙ୍କର ଭାବ ମରଣେ କାଂ ଅହୋ ରାଚୀ ରହ୍ୟୋ !'*

(କ୍ଷଣ-କ୍ଷଣ ଭୟଙ୍କର ଭାବ ମରଣ, କ'ଣ ଆରେ ପ୍ରସନ୍ନ ଅଛୁ !)

ଏମାନେ ସମସ୍ତେ ବଞ୍ଚୁଛନ୍ତି, ସେମାନେ ମରିବା ପାଇଁ ନା କ'ଣ ପାଇଁ ବଞ୍ଚୁଛନ୍ତି ?

## ସମାଧି ମରଣ

ଏଣୁ ମୃତ୍ୟୁକୁ କହିବ ଯେ, 'ତୋତେ ଜଲ୍‌ଦୀ ଆସିବାର ଅଛି ତେବେ ଜଲଦୀ ଆ, ଡେରିରେ ଆସିବାର ଅଛି ତେବେ ଡେରିରେ ଆ, କିନ୍ତୁ 'ସମାଧି ମରଣ' ହୋଇ ଆସିବୁ!'

ସମାଧି ମରଣ ଅର୍ଥାତ ଆତ୍ମା ବ୍ୟତୀତ ଅନ୍ୟ କିଛି ସ୍ମରଣ ନଥାଏ । ନିଜ ସ୍ୱରୂପ ଶୁଦ୍ଧାତ୍ମାକୁ ଛାଡ଼ି ଅନ୍ୟ ଜାଗାରେ ଚିତ୍ତ ହିଁ ନଥାଏ । ମନ-ବୁଦ୍ଧି-ଚିତ୍ତ-ଅହଂକାର କେହି ବି ଅସ୍ଥିର ନଥାନ୍ତି ! ନିରନ୍ତର ସମାଧି ! ଦେହକୁ *ଉପାଧି* ଥାଏ, ତଥାପି *ଉପାଧି* ଛୁଏଁ ନାହିଁ ! ଦେହ ତ *ଉପାଧି* ବାଲା ଅଟେ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** କେବଳ *ଉପାଧି* ବାଲା ହିଁ ନୁହେଁ, ବ୍ୟାଧିବାଲା ବି ଅଟେ ନା ନାହିଁ ? ଜ୍ଞାନୀଙ୍କୁ *ଉପାଧି* ଛୁଏଁ ନାହିଁ । ବ୍ୟାଧି ହୋଇଥିବ ତେବେ ତାହା ମଧ୍ୟ ଛୁଏଁ ନାହିଁ । ଆଉ ଅଜ୍ଞାନୀ ତ ବ୍ୟାଧି ନଥିବ, ତେବେ ତାକୁ ଡାକେ ! ସମାଧି ମୃତ୍ୟୁ ଅର୍ଥାତ 'ମୁଁ ଶୁଦ୍ଧାତ୍ମା ଅଟେ' ଏପରି ଭାନ୍(ଜାଗୃତି) ରୁହେ ! ଆମର କେତେ ସବୁ ମହାତ୍ମାଙ୍କର ମୃତ୍ୟୁ ହୋଇଛି, ସେ ସମସ୍ତଙ୍କୁ 'ମୁଁ ଶୁଦ୍ଧାତ୍ମା ଅଟେ, ମୁଁ ଶୁଦ୍ଧାତ୍ମା ଅଟେ' ଏପରି ଭାନ୍ ରହୁଥିଲା ।

## ଗତିର ଲକ୍ଷଣ

**ପ୍ରଶ୍ନକର୍ତ୍ତା :** ମୃତ୍ୟୁ ସମୟରେ ଏପରି କିଛି ଲକ୍ଷଣ ଅଛି କି ଯେବେ ଜଣା ପଡ଼େ ଯେ ଏ ଜୀବର ଗତି ଭଲ ହେଲା ନା ନାହିଁ ?

**ଦାଦାଶ୍ରୀ :** ସେ ସମୟରେ, ମୋ ଝିଅ ବାହା ଦେଲି କି ନାହିଁ? ଏସବୁ ହୋଇନାହିଁ । ଏଭଳି ସବୁ ଘରର ହିଁ ମଗଜମାରୀ କରି ଚାଲିଥାଏ, *ଉପାଧି* କରି ଚାଲିଥାଏ । ଏଣୁ ବୁଝିନେବ ଯେ ୟା'ର ହୋଇଗଲା ଅଧୋଗତି । ଆଉ ଆତ୍ମାରେ ରହୁଥିବ ଅର୍ଥାତ ଭଗବାନରେ ରହୁଥିବ ତେବେ ଭଲ ଗତି ହେଲା ।

**ପ୍ରଶ୍ନକର୍ତ୍ତା :** କିନ୍ତୁ କିଛି ଦିନ ବେହୋସ ରୁହେ, ତେବେ ?

**ଦାଦାଶ୍ରୀ :** ବେହୋସ ରୁହେ, ତଥାପି ଭିତରେ ଯଦି ଜ୍ଞାନରେ ଥିବ ତେବେ ଚଳିବ । ଏହି ଜ୍ଞାନ ନେଇଥିବା ଦରକାର । ପୁଣି ବେହୋସ ଥିବ ତେବେ ମଧ୍ୟ ଚଳିବ ।

## ମୃତ୍ୟୁର ଭୟ

**ପ୍ରଶ୍ନକର୍ତ୍ତା :** ତେବେ ମୃତ୍ୟୁର ଭୟ କାହିଁକି ରହେ ସମସ୍ତଙ୍କୁ ?

**ଦାଦାଶ୍ରୀ :** ମୃତ୍ୟୁର ଭୟ ତ ଅହଂକାରକୁ ରହେ, ଆତ୍ମାକୁ କିଛି ନାହିଁ । ଅହଂକାରକୁ ଭୟ ଥାଏ ଯେ ମୁଁ ମରିଯିବି, ମୁଁ ମରିଯିବି ।

## ସେହି ଦୃଷ୍ଟିରେ ଦେଖ ତ ଟିକିଏ

ଭଗବାନଙ୍କ ଦୃଷ୍ଟିରେ ଏହି ସଂସାରରେ କ'ଣ ଚାଲୁଅଛି ? ତେବେ କହିବା, ତାଙ୍କ ଦୃଷ୍ଟିରେ ତ କେହି ମରେ ହିଁ ନାହିଁ । ଭଗବାନଙ୍କର ଯେଉଁ ଦୃଷ୍ଟି, ସେ ଦୃଷ୍ଟି ଯଦି ତୁମକୁ ପ୍ରାପ୍ତ ହେବ, ସେ ଯଦି ଗୋଟିଏ ଦିନ ପାଇଁ ତୁମକୁ ଦେବେ, ତେବେ ଏଠି ପଛେ ଯେତେ ଲୋକ ମରିଯାନ୍ତୁ, ତଥାପି ତୁମ ଉପରେ ପ୍ରଭାବ ପଡ଼ିବ ନାହିଁ, କାହିଁକିନା ଭଗବାନଙ୍କ ଦୃଷ୍ଟିରେ କେହି ମରେ ହିଁ ନାହିଁ ।

## ଜୀବ, ତେବେ ମରଣ; ଶିବ, ତେବେ ଅମର

କେବେ ନା କେବେ ସଲ୍ୟୁଶନ ତ ଆଣିବାକୁ ପଡ଼ିବ ନା ? ଜୀବନ-ମରଣର ସଲ୍ୟୁଶନ ଆଣିବାକୁ ପଡ଼ିବ ନାହିଁ ? ବାସ୍ତବରେ ନିଜେ ମରେ ବି ନାହିଁ ଏବଂ ବାସ୍ତବରେ ଜିଏଁ ନାହିଁ ମଧ୍ୟ । ଏହା ତ ମାନ୍ୟତାରେ ହିଁ ଭୁଲ ଅଛି ଯେ ସ୍ୱୟଂ କୁ ଜୀବ ମାନି ବସିଛି । ନିଜର ସ୍ୱରୂପ ଶିବ ଅଟେ । ନିଜେ ଶିବ ଅଟେ, କିନ୍ତୁ ଏହା ନିଜକୁ ବୁଝା ପଡୁନାହିଁ ଏବଂ ନିଜକୁ ଜୀବସ୍ୱରୂପ ମାନି ବସିଛି !

**ପ୍ରଶ୍ନକର୍ତ୍ତା :** ଏପରି ଯଦି ପ୍ରତ୍ୟେକଙ୍କୁ ବୁଝା ପଡୁଥାନ୍ତା, ତେବେ ଏ ଦୁନିଆ ଚାଲିବ ନାହିଁ ନା ?

**ଦାଦାଶ୍ରୀ :** ହଁ, ଚାଲିବ ହିଁ ନାହିଁ ନା ! କିନ୍ତୁ ପ୍ରତ୍ୟେକଙ୍କୁ ତାହା ବୁଝାପଡ଼ିବ ଏପରି ମଧ୍ୟ ନୁହେଁ ! ଏହା ତ ପଜ୍ଜଲ୍ ଅଟେ ସବୁ । ଅତ୍ୟନ୍ତ ଗୁହ୍ୟ, ଅତ୍ୟନ୍ତ ଗୁହ୍ୟତମ ।

ଏହି ଗୁହ୍ୟତମ କାରଣରୁ ହିଁ ଏସବୁ ଏପରି *ପୋଲମ୍‌ପୋଲ୍* ଜଗତ ଚାଲୁ ରହିଛି ।

### ଜୀଏଁ-ମରେ, ସେ କିଏ ?

ଏ ଜନ୍ମ-ମୃତ୍ୟୁ ଆତ୍ମାର ନୁହେଁ । ଆତ୍ମା ପରମାନେଣ୍ଟ ବସ୍ତୁ ଅଟେ । ଏ ଜନ୍ମ-ମୃତ୍ୟୁ ଇଗୋଇଜମ୍, ଅହଂକାରର । ଇଗୋଇଜମ୍ ଜନ୍ମ ପାଏ ଏବଂ ଇଗୋଇଜମ୍ ମରେ । ବାସ୍ତବରେ ଆତ୍ମା ନିଜେ ମରେ ହିଁ ନାହିଁ । ଅହଂକାର ହିଁ ଜନ୍ମ ହୁଏ ଏବଂ ଅହଂକାର ହିଁ ମରେ ।

# ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ...

## ଆତ୍ମାର ସ୍ଥିତି

### ଜନ୍ମ-ମରଣ କ'ଣ ?

**ପ୍ରଶ୍ନକର୍ତ୍ତା :** ଜନ୍ମ-ମରଣ କ'ଣ ?

**ଦାଦାଶ୍ରୀ :** ଜନ୍ମ-ମରଣ ତ ହୁଏ, ଆମେ ଦେଖୁଛେ ଯେ ସେଥିରେ କ'ଣ ହୁଏ, ସେଥିରେ ପଚାରିବା ଭଳି କିଛି ନାହିଁ । ଜନ୍ମ-ମରଣ ଅର୍ଥାତ ତା'ର କର୍ମର ହିସାବ ପୁରା ହୋଇଗଲା, ଏକ ଅବତାରର ଯେଉଁ ହିସାବ ବାନ୍ଧିଥିଲା ତାହା ପୁରା ହୋଇଗଲା, ସେଥିପାଇଁ ମରଣ ହୋଇଯାଏ ।

### ମୃତ୍ୟୁ କ'ଣ ?

**ପ୍ରଶ୍ନକର୍ତ୍ତା :** ମୃତ୍ୟୁ କ'ଣ ?

**ଦାଦାଶ୍ରୀ :** ମୃତ୍ୟୁ ତ ଏପରି ଅଟେ ଯେ, ଏ କାମିଜ ସିଲାଇଲେ ଅର୍ଥାତ କାମିଜର ଜନ୍ମ ହେଲା, ଏବଂ ଜନ୍ମ ହେଲା, ଏଣୁ ମୃତ୍ୟୁ ନ ହୋଇ ରୁହେ ହିଁ ନାହିଁ! କୌଣସି ବି ବସ୍ତୁର ଜନ୍ମ ହୁଏ, ତାହାର ମୃତ୍ୟୁ ଅବଶ୍ୟ ହୋଇଥାଏ । ଆଉ ଆତ୍ମା ଅଜନ୍ମ-ଅମର ଅଟେ, ତା'ର ମୃତ୍ୟୁ ହିଁ ହୁଏ ନାହିଁ । ଅର୍ଥାତ ଯେତିକି ବସ୍ତୁ ସବୁ ଜନ୍ମ

ହୁଅନ୍ତି, ତାଙ୍କର ମୃତ୍ୟୁ ଅବଶ୍ୟ ହୋଇଥାଏ ଆଉ ମୃତ୍ୟୁ ଅଛି ତେବେ ଜନ୍ମ ପାଇବ l ଜନ୍ମ ସାଥିରେ ମୃତ୍ୟୁ ଜଏଣ୍ଟ ହୋଇଛି l ଜନ୍ମ ହେବ, ସେଠାରେ ମୃତ୍ୟୁ ଅବଶ୍ୟ ହୁଏ !

**ପ୍ରଶ୍ନକର୍ତ୍ତା :** ମୃତ୍ୟୁ କ'ଣ ପାଇଁ ଅଛି ?

**ଦାଦାଶ୍ରୀ :** ମୃତ୍ୟୁ ତ ଏପରି ଯେ, ଏହି ଦେହର ଜନ୍ମ ହେଲା ତାହା ଏକ ସଂଯୋଗ, ତାହାର ବିୟୋଗ ନ ହୋଇ ରୁହେ ହିଁ ନାହିଁ ! ସଂଯୋଗ ସର୍ବଦା ବିୟୋଗୀ ସ୍ୱଭାବର ହିଁ ହୋଇଥାଏ l ଆମେ ସ୍କୁଲରେ ପଢ଼ିବାକୁ ଯାଇଥିଲେ, ସେତେବେଳେ ଆରମ୍ଭ କରିଥିଲେ ନା ନାହିଁ, ବିଗନିଙ୍ଗ୍ ? ପରେ ଏଣ୍ଡ୍ ଆସିଲା ନା ନାହିଁ ? ପ୍ରତ୍ୟେକ ବସ୍ତୁ ବିଗିନିଙ୍ଗ୍ ଏବଂ ଏଣ୍ଡ୍‌ବାଲା ହୋଇଥାଏ l ଏଠାରେ ଏ ସବୁ ଜିନିଷର ବିଗିନିଙ୍ଗ୍ ଆଉ ଏଣ୍ଡ୍ ଥାଏ l ବୁଝା ପଡ଼ିଲା ନାହିଁ ତୋତେ ?

**ପ୍ରଶ୍ନକର୍ତ୍ତା :** ବୁଝା ପଡ଼ିଲା ନା !

**ଦାଦାଶ୍ରୀ :** ଏ ସମସ୍ତ ଜିନିଷ ବିଗିନିଙ୍ଗ୍-ଏଣ୍ଡ୍‌ବାଲା, କିନ୍ତୁ ବିଗିନିଙ୍ଗ୍ ଏବଂ ଏଣ୍ଡ୍‌କୁ ଯିଏ ଜାଣିଛି, ସେ ଜାଣିବାବାଲା କିଏ ?

ବିଗିନିଙ୍ଗ୍-ଏଣ୍ଡ୍‌ବାଲା ସମସ୍ତ ବସ୍ତୁ ଟେମ୍ପରାରୀ(ଅସ୍ଥାୟୀ) ବସ୍ତୁ ଅଟେ l ଯାହାର ବିଗିନିଙ୍ଗ୍ ଥାଏ ତାହାର ଏଣ୍ଡ୍ ଥାଏ, ବିଗିନିଙ୍ଗ୍ ହୁଏ ତାହାର ଏଣ୍ଡ୍ ଅବଶ୍ୟ ହିଁ ଥାଏ l ସେସବୁ ଟେମ୍ପରାରୀ ବସ୍ତୁ ଅଟେ, କିନ୍ତୁ ଟେମ୍ପରାରୀକୁ ଜାଣିବାବାଲା କିଏ ? ତୁ ପରମାନେଣ୍ଟ ଅଟୁ, କାହିଁକିନା ତୁ ଏ ସବୁ ବସ୍ତୁକୁ ଟେମ୍ପରାରୀ କହୁଛୁ, ଏଣୁ ତୁ ପରମାନେଣ୍ଟ ଅଟୁ l ଯଦି ସମସ୍ତ ବସ୍ତୁ ଟେମ୍ପରାରୀ ହୋଇଥାନ୍ତା ତେବେ ପୁଣି ଟେମ୍ପରାରୀ କହିବାର ଆବଶ୍ୟକତା ହିଁ ନଥିଲା l ଟେମ୍ପରାରୀ ସାପେକ୍ଷ ଶବ୍ଦ ଅଟେ l ପରମାନେଣ୍ଟ ଅଛି, ତେବେ ଟେମ୍ପରାରୀ ଅଛି l

## ମୃତ୍ୟୁର କାରଣ

**ପ୍ରଶ୍ନକର୍ତ୍ତା :** ତେବେ ମୃତ୍ୟୁ କ'ଣ ପାଇଁ ଆସେ ?

**ଦାଦାଶ୍ରୀ :** ତାହା ତ ଏପରି, ଯେବେ ଜନ୍ମ ହୁଏ, ସେତେବେଳେ ଏ ମନ-

ବଚନ-କାୟାର ତିନି ବ୍ୟାଟେରୀ ଥାଆନ୍ତି, ଯାହା ଗର୍ଭରୁ ଇଫେକ୍ଟ(ପରିଣାମ) ଦେଇ ଚାଲିଥାନ୍ତି । ସେ ଇଫେକ୍ଟ ପୂର୍ଣ୍ଣ ହୁଏ, ତେବେ 'ବ୍ୟାଟେରୀ ମାନଙ୍କ' ଠାରୁ ହିସାବ ପୁରା ହୋଇଯାଏ, ସେପର୍ଯ୍ୟନ୍ତ ସେ ବ୍ୟାଟେରୀ ମାନେ ଥାଆନ୍ତି ଏବଂ ପରେ ଖତମ ହୋଇଯାନ୍ତି, ତାହାକୁ ମୃତ୍ୟୁ କୁହନ୍ତି । କିନ୍ତୁ ସେତେବେଳେ ପୁଣି ପରଜନ୍ମ ପାଇଁ ଭିତରେ ନୂଆ ବ୍ୟାଟେରୀ ଚାର୍ଜ ହୋଇ ସାରିଥାଏ । ପରଜନ୍ମ ପାଇଁ  ଭିତରେ ନୂଆ ବ୍ୟାଟେରୀ ଚାର୍ଜ ହୋଇ ଚାଲିଥାଏ ଏବଂ ପୁରୁଣା ବ୍ୟାଟେରୀ 'ଡିସ୍‌ଚାର୍ଜ' ହେଉଥାଏ । ଏହିପରି ଚାର୍ଜ-ଡିସ୍‌ଚାର୍ଜ ହୋଇ ଚାଲିଥାଏ । କାରଣ ତା'କୁ 'ରଙ୍ଗ୍-ବିଲିଫ୍'(ଭ୍ରାନ୍ତ ମାନ୍ୟତା) ଅଛି । ସେଥିପାଇଁ 'କଜେଜ୍'(କାରଣ) ଉତ୍ପନ୍ନ ହୁଏ । ଯେପର୍ଯ୍ୟନ୍ତ 'ରଙ୍ଗ୍-ବିଲିଫ୍' ଅଛି ସେପର୍ଯ୍ୟନ୍ତ ରାଗ୍-ଦ୍ୱେଷ ଏବଂ 'କଜେଜ୍' ଉତ୍ପନ୍ନ ହୁଏ । ଆଉ ସେ 'ରଙ୍ଗ୍-ବିଲିଫ୍' ବଦଳେ ଆଉ 'ରାଇଟ୍ ବିଲିଫ୍' ବସେ, ତେବେ ପୁଣି ରାଗ୍-ଦ୍ୱେଷ ଏବଂ 'କଜେଜ୍' ଉତ୍ପନ୍ନ ହୁଏ ନାହିଁ ।

## ପୁନର୍ଜନ୍ମ

**ପ୍ରଶ୍ନକର୍ତ୍ତା :** ଜୀବାତ୍ମା ମରେ, ପୁଣି ଫେରିକି ଆସେ ନା ?

**ଦାଦାଶ୍ରୀ :** ଏପରି ଅଟେ, ଫରେନ୍‌ବାଲାଙ୍କର ଫେରେ ନାହିଁ, ମୁସଲିମ୍ ମାନଙ୍କର ଫେରେ ନାହିଁ, କିନ୍ତୁ ତୁମର ଫେରିକି ଆସେ । ତୁମ ଉପରେ ଭଗବାନଙ୍କର ଏତେ କୃପା ଅଛି ଯେ ତୁମର ଫେରିକି ଆସେ । ଏଠାରେ ମରିଲା କି ସେଠି ଅଲଗା ଯୋନିରେ ପ୍ରବେଶ କରି ସାରିଥାଏ । ଆଉ ତାଙ୍କର ତ ଫେରେ ନାହିଁ ।

ଏବେ ବାସ୍ତବରେ ଫେରେ ନାହିଁ, ଏପରି ନୁହେଁ । ସେମାନଙ୍କର ମାନ୍ୟତା ଏପରି ଯେ ଏଠାରୁ ମରିଲି ମାନେ ମରିଗଲି, କିନ୍ତୁ ବାସ୍ତବରେ ଫେରିକି ହିଁ ଆସେ ! କିନ୍ତୁ ତାଙ୍କୁ ବୁଝା ପଡ଼େ ନାହିଁ । ପୁନର୍ଜନ୍ମ ହିଁ ବୁଝନ୍ତି ନାହିଁ । ତୁମକୁ ପୁନର୍ଜନ୍ମ ବୁଝା ପଡୁଛି ନା ?

ଶରୀରର ମୃତ୍ୟୁ ହୁଏ, ତେବେ ତାହା ଜଡ଼ ହୋଇଯାଏ । ତାହା ଉପରୁ ସାବ୍ୟସ୍ତ ହୁଏ ଯେ ସେଥିରେ ଜୀବ ଥିଲା, ସେ ବାହାରି ଅନ୍ୟ ଜାଗା ଗଲା । ଫରେନ୍‌ବାଲା

ତ କୁହନ୍ତି ଯେ ଏ ସେହି ଜୀବ ଥିଲା ଏବଂ ସେହି ଜୀବ ମରିଗଲା । ଆମେ ତାହା ସ୍ୱୀକାର କରୁନା । ଆମେ ପୁନର୍ଜନ୍ମରେ ମାନୁ । ଆମେ 'ଡେଭଲପ'(ବିକଶିତ) ହୋଇଛେ । ଆମେ ବୀତରାଗ ବିଜ୍ଞାନକୁ ଜାଣିଛେ । ବୀତରାଗ ବିଜ୍ଞାନ କୁହେ, ପୁନର୍ଜନ୍ମ ଆଧାରରେ ଆମେ ଏକାଠି ହୋଇଛେ, ଏପରି ହିନ୍ଦୁସ୍ତାନରେ ବୁଝନ୍ତି । ସେହି ଆଧାରରେ ଆମେ ଆତ୍ମାକୁ ମାନିବାକୁ ଲାଗିଛେ । ନହେଲେ ଯଦି ପୁନର୍ଜନ୍ମର ଆଧାର ନଥାନ୍ତା ତେବେ ଆତ୍ମା ମାନିହେବ ବା କିପରି ?

ତେବେ ପୁନର୍ଜନ୍ମ କାହାର ହୁଏ ? ତେବେ କହିବା, ଆତ୍ମା ଅଛି, ତେବେ ପୁନର୍ଜନ୍ମ ହୁଏ, କାହିଁକିନା ଦେହ ତ ମରିଗଲା, ଜାଳିଦିଆ ଗଲା, ଏପରି ଆମେ ଦେଖୁ ।

ଏଣୁ ଆତ୍ମା ଯଦି ବୁଝି ହେଉଥିବ, ତେବେ ସମାଧାନ ଆସିଯିବ ନା ! କିନ୍ତୁ ତାହା ବୁଝିହୁଏ ଏପରି ନୁହେଁ ନା ! ଏଥିପାଇଁ ସମସ୍ତ ଶାସ୍ତ୍ର କହିଲେ ଯେ 'ଆତ୍ମା ଜାଣ' ! ଏବେ ତା'କୁ ଜାଣିବା ବିନା ଯାହା କିଛି କରାଯାଉଛି, ସେସବୁ ତା'କୁ ଲାଭଦାୟକ ନୁହେଁ, ହେଲ୍ପିଙ୍ଗ୍ ନୁହେଁ । ପ୍ରଥମେ ଆତ୍ମା ଜାଣିବ ତେବେ ସବୁ ସଲ୍ୟୁଶନ(ସମାଧାନ) ଆସିଯିବ !

## ପୁନର୍ଜନ୍ମ କାହାର ?

**ପ୍ରଶ୍ନକର୍ତ୍ତା :** ପୁନର୍ଜନ୍ମ କିଏ ନିଏ ? ଜୀବ ନିଏ ନା ଆତ୍ମା ନିଏ ?

**ଦାଦାଶ୍ରୀ :** ନା, କାହାରିକୁ ନେବାକୁ ପଡ଼େ ନାହିଁ, ହୋଇଯାଏ । ଏ ସଂସାର ଇଟ୍ ହାପେନ୍ସ ହିଁ ଅଟେ (ଆପେ ଆପେ ଚାଲୁଅଛି) !

**ପ୍ରଶ୍ନକର୍ତ୍ତା :** ହଁ, କିନ୍ତୁ କାହା ଦ୍ୱାରା ହୋଇଯାଏ ? ଜୀବ ଦ୍ୱାରା ହୋଇଯାଏ ନା ଆତ୍ମା ଦ୍ୱାରା ?

**ଦାଦାଶ୍ରୀ :** ନା, ଆତ୍ମାକୁ କିଛି ନେବା-ଦେବା ହିଁ ନାହିଁ, ସବୁ ଜୀବ ଦ୍ୱାରା ହିଁ ଅଟେ । ଯାହାକୁ ଭୌତିକ ସୁଖ ଦରକାର, ତା'କୁ ଯୋନିରେ ପ୍ରବେଶ କରିବାର

'ରାଇଟ୍'(ଅଧିକାର) ଅଛି । ଯାହାକୁ ଭୌତିକ ସୁଖ ଦରକାର ନାହିଁ, ତା'କୁ ଯୋନିରେ ପ୍ରବେଶ କରିବାର ରାଇଟ୍ ଚାଲିଯାଏ ।

## ସମ୍ବନ୍ଧ ଜନ୍ମ-ଜନ୍ମର

**ପ୍ରଶ୍ନକର୍ତ୍ତା :** ମନୁଷ୍ୟର ପ୍ରତ୍ୟେକ ଜନ୍ମର ପୁନର୍ଜନ୍ମ ସହିତ ସମ୍ବନ୍ଧ ଅଛି ?

**ଦାଦାଶ୍ରୀ :** ତାହା ତ ପ୍ରତ୍ୟେକ ଜନ୍ମ ପୁର୍ବଜନ୍ମ ହିଁ ହୋଇଥାଏ । ଅର୍ଥାତ ପ୍ରତ୍ୟେକ ଜନ୍ମର ସମ୍ବନ୍ଧ ପୁର୍ବଜନ୍ମରୁ ହିଁ ହୋଇଥାଏ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ପୁର୍ବଜନ୍ମର ଏହି ଜନ୍ମ ସହିତ କ'ଣ ନେବା-ଦେବା ଅଛି ?

**ଦାଦାଶ୍ରୀ :** ଆରେ ଆସନ୍ତା ଜନ୍ମ ପାଇଁ ଏହା ପୁର୍ବଜନ୍ମ ହେଲା । ପଛ ଜନ୍ମ, ସେ ପୁର୍ବଜନ୍ମ ଅଛି, ତେବେ ଏହି ଜନ୍ମ ଅଛି । ଏହା ଆସନ୍ତା ଜନ୍ମର ପୁର୍ବଜନ୍ମ କୁହାଯାଏ ।

**ପ୍ରଶ୍ନକର୍ତ୍ତା :** ହଁ, ତାହା ଠିକ କଥା । କିନ୍ତୁ କ'ଣ ପୁର୍ବଜନ୍ମରେ ଭିତରେ ଏପରି କିଛି ଥାଏ, ଯାହାର ଏହି ଜନ୍ମ ସହିତ କିଛି ସମ୍ବନ୍ଧ ଥିବ ?

**ଦାଦାଶ୍ରୀ :** ବହୁତ ସମ୍ବନ୍ଧ, ପୁରା !, ପୁର୍ବଜନ୍ମରେ ବୀଜ ପଡ଼େ ଏବଂ ପରଜନ୍ମରେ ଫଳ ଆସେ । ଏଣୁ ସେଥିରେ, ବୀଜରେ ଏବଂ ଫଳରେ ଫରକ ନାହିଁ ? ସମ୍ବନ୍ଧ ହେଲା ନା ନାହିଁ ? ! ଆମେ ଧାନ ମଞ୍ଜି ବୁଣିବା, ତାହା ପୁର୍ବଜନ୍ମ ଏବଂ ଧାନ ଫଳେ, ତାହା ଏହି ଜନ୍ମ, ପୁଣି ଥରେ ଏହି ଧାନରୁ ବୀଜ ରୂପରେ ମଞ୍ଜି ପଡ଼ିଲା ତାହା ପୁର୍ବଜନ୍ମ ଆଉ ସେଥିରୁ ଧାନ ଫଳିଲା ତାହା ନୂଆ ଜନ୍ମ । ବୁଝିପାରିଲ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ଜଣେ ବ୍ୟକ୍ତି ରାସ୍ତାରେ ଚାଲି ଚାଲି ଯାଉଛି ଏବଂ ଅନ୍ୟ କେତେ ସବୁ ରାସ୍ତାରେ ଚାଲି ଚାଲି ଯାଆନ୍ତି, କିନ୍ତୁ କୌଣସି ସାପ କେଉଁ ନିର୍ଦ୍ଦିଷ୍ଟ ବ୍ୟକ୍ତିକୁ ହିଁ କାମୁଡ଼େ, ତାହାର କାରଣ କ'ଣ ପୁନର୍ଜନ୍ମ ?

**ଦାଦାଶ୍ରୀ :** ହଁ, ମୁଁ ଏହା ହିଁ କହିବାକୁ ଚାହୁଁଛି ଯେ ପୁନର୍ଜନ୍ମ ଅଛି । ସେଥିପାଇଁ ସେ ସାପ ତୁମକୁ କାମୁଡ଼େ, ପୁନର୍ଜନ୍ମ ନଥାନ୍ତା, ତେବେ ତୁମକୁ ସାପ

କାମୁଡ଼ି ନଥାନ୍ତା, ପୁନର୍ଜନ୍ମ ଅଛି, ସେ ତୁମର ହିସାବ ତୁମକୁ ସୁଝେ । ଏ ସବୁ ହିସାବ ସୁଝୁଅଛି । ଯେପରି ଖାତାରେ ବାକିଥିବା ହିସାବ ସୁଝନ୍ତି ନା, ସେହିପରି ସବୁ ହିସାବ ସୁଝୁଅଛି । ଆଉ 'ଡେଭଲପମେଣ୍ଟ' କାରଣରୁ ଏ ସବୁ ହିସାବ ଆମକୁ ବୁଝା ପଡୁଛି ମଧ୍ୟ । ସେଥିପାଇଁ ଆମର ଏଠି କେତେ ସବୁ ଲୋକଙ୍କୁ ଏପରି ମାନ୍ୟତା ମଧ୍ୟ ହୋଇ ଯାଇଛି ଯେ ପୁନର୍ଜନ୍ମ ନିଶ୍ଚୟ ଅଛି ! କିନ୍ତୁ ସେମାନେ 'ପୁନର୍ଜନ୍ମ' ନିଶ୍ଚୟ ଅଛି, ଏପରି କହି ପାରିବେ ନାହିଁ । 'ନିଶ୍ଚୟ ଅଛି' ଏପରି କିଛି ପ୍ରମାଣ ଦେଇ ପାରିବେ ନାହିଁ । କିନ୍ତୁ ତା'ର ନିଜର ଶ୍ରଦ୍ଧାରେ ବସି ଯାଇଛି, ଏପରି ସବୁ ଉଦାହରଣରୁ, ଯେ ପୁନର୍ଜନ୍ମ ଅଛି ତ ନିଶ୍ଚୟ !

ଏ ଭଉଣୀ କହିବେ, ଯାକୁ କାହିଁକି ଭଲ ଶାଶୁ ମିଳିଲା ଆଉ ମୋତେ କାହିଁକି ଏପରି ମିଳିଲା ? ଅର୍ଥାତ ସଂଯୋଗ ସବୁ ଭଳିକି ଭଳି ମିଳେ ।

## ଆଉ କ'ଣ ଯାଏ ସାଥିରେ ?

**ପ୍ରଶ୍ନକର୍ତ୍ତା :** ଏକ ଜୀବ ଅଲଗା ଦେହକୁ ଯାଏ । ସେଠାକୁ ପଞ୍ଚେନ୍ଦ୍ରିୟ ଆଉ ମନ ଇତ୍ୟାଦି ପ୍ରତ୍ୟେକ ଜୀବ ସାଥିରେ ନେଇ ଯାଏ ?

**ଦାଦାଶ୍ରୀ :** ନା, ନା, କିଛି ବି ନୁହଁ । ଇନ୍ଦ୍ରିୟ ତ ସବୁ ଏକ୍‌ଜୋଷ୍ଟ(ଖାଲି) ହୋଇ ଖତମ ହୋଇଗଲା, ଇନ୍ଦ୍ରିୟ ସବୁ ତ ମରିଗଲେ । ଏଣୁ ତା' ସାଥିରେ ଇନ୍ଦ୍ରିୟ ପରି କିଛି ବି ଯାଏ ନାହିଁ । କେବଳ ଏ କ୍ରୋଧ-ମାନ-ମାୟା-ଲୋଭ ଯାଆନ୍ତି । ସେହି କାରଣରୁ ଶରୀରରେ କ୍ରୋଧ-ମାନ-ମାୟା-ଲୋଭ ସବୁ ଆସିଗଲା । ଆଉ ସୂକ୍ଷ୍ମ ଶରୀର କିଭଳି ଅଟେ? ଯେପର୍ଯ୍ୟନ୍ତ ମୋକ୍ଷରେ ନ ଯାଆନ୍ତି, ସେପର୍ଯ୍ୟନ୍ତ ସାଥିରେ ହିଁ ରୁହେ । ପଛେ ଯେଉଁଠି ଅବତାର ହେଉ, କିନ୍ତୁ ଏ ସୂକ୍ଷ୍ମ ଶରୀର ତ ସାଥିରେ ହିଁ ଥାଏ ।

## ଇଲେକ୍ଟ୍ରିକାଲ ବଡୀ

ଆତ୍ମା ଦେହକୁ ଛାଡ଼ି ଏକୁଟିଆ ଯାଏ ନାହିଁ । ଆତ୍ମା ସହିତ ପୁଣି ସବୁ କର୍ମ, ଯାହାକୁ କାରଣ ଶରୀର କୁହାଯାଏ ସେସବୁ, ପୁଣି ତୃତୀୟରେ 'ଇଲେକ୍ଟ୍ରିକାଲ ବଡୀ'(ତେଜସ୍ ଶରୀର), ଏ ତିନିହେଁ ସାଥିରେ ବାହାରନ୍ତି । ଯେପର୍ଯ୍ୟନ୍ତ ଏ ସଂସାର

ଅଛି, ସେପର୍ଯ୍ୟନ୍ତ ଏ ଇଲେକ୍ଟ୍ରିକାଲ ବଡୀ ପ୍ରତ୍ୟେକ ଜୀବରେ ଥାଏ ହିଁ ଥାଏ ! କାରଣ ଶରୀର ବନ୍ଧାହେଲା ମାନେ ଇଲେକ୍ଟ୍ରିକାଲ ବଡୀ ସାଥିରେ ହିଁ ଥାଏ । ଇଲେକ୍ଟ୍ରିକାଲ ବଡୀ ପ୍ରତ୍ୟେକ ଜୀବରେ ସାମାନ୍ୟ ଭାବରେ ଥାଏ ହିଁ ଥାଏ ଏବଂ ତାହାର ଆଧାରରେ ଆମର ଚାଲେ । ଭୋଜନ କରନ୍ତି, ତାହାକୁ ହଜମ କରିବାର କାମ ଇଲେକ୍ଟ୍ରିକାଲ ବଡୀ କରେ । ସେ ରକ୍ତ ତିଆରି ହୁଏ, ରକ୍ତ ଶରୀରରେ ଉପରକୁ ଚଢ଼ାଏ, ତଳକୁ ଆଣେ ସେ ସବୁ ଭିତରେ କାର୍ଯ୍ୟ କରି ଚାଲିଥାଏ । ଆଖିରେ ଦେଖାଯାଏ, ସେ ଲାଇଟ ସବୁ ଇଲେକ୍ଟ୍ରିକାଲ ବଡୀ କାରଣରୁ ହୁଏ । ଏବଂ ଏ କ୍ରୋଧ-ମାନ-ମାୟା-ଲୋଭ ବି ଏହି 'ଇଲେକ୍ଟ୍ରିକାଲ ବଡୀ' କାରଣରୁ ହିଁ ହୁଅନ୍ତି । ଆତ୍ମାରେ କ୍ରୋଧ-ମାନ-ମାୟା-ଲୋଭ ବିଲକୁଲ ନାହିଁ । ଏ ଗୁସ୍‌ସା(ରାଗିବା) ମଧ୍ୟ, ସେ ସବୁ ଇଲେକ୍ଟ୍ରିକାଲ ବଡୀର ଶକ୍(ଝଟକା) ଅଟେ ।

**ପ୍ରଶ୍ନକର୍ତ୍ତା :** ମାନେ 'ଚାର୍ଜ' ହେବାରେ 'ଇଲେକ୍ଟ୍ରିକାଲ ବଡୀ' କାମ କରୁଥିବ ନା ?

**ଦାଦାଶ୍ରୀ :** ଇଲେକ୍ଟ୍ରିକାଲ ବଡୀ ଥିବ, ତେବେଯାଇ ଚାର୍ଜ ହୁଏ । ନହେଲେ ଏହି ଇଲେକ୍ଟ୍ରିକାଲ ବଡୀ ନଥିବ, ତେବେ ଏ କିଛି ଚାଲିବ ହିଁ ନାହିଁ । 'ଇଲେକ୍ଟ୍ରିକାଲ ବଡୀ' ଥିବ ଆଉ ଆତ୍ମା ନଥିବ, ତେବେ ମଧ୍ୟ କିଛି ଚାଲିବ ନାହିଁ । ଏ ସବୁ ସାମୂହିକ 'କଜେଜ' ଅଟେ ।

## ଗର୍ଭରେ ଜୀବର ପ୍ରବେଶ କେତେବେଳେ ?

**ପ୍ରଶ୍ନକର୍ତ୍ତା :** ସଞ୍ଚାର ହୁଏ, ସେତେବେଳେ ଜୀବ ପ୍ରବେଶ କରେ, ପ୍ରାଣ ଆସେ, ବେଦରେ ଏପରି କୁହନ୍ତି ।

**ଦାଦାଶ୍ରୀ :** ନା, ସେ ସବୁ କେବଳ କଥା ଅଟେ । ତାହା ଅନୁଭବର ନୁହେଁ, ପ୍ରକୃତ କଥା ନୁହେଁ ଏ ସବୁ । ତାହା ଲୌକିକ ଭାଷାର । ଜୀବ ବିନା କେବେ ବି ଗର୍ଭ ଧାରଣ ହୁଏ ନାହିଁ । ଜୀବର ଉପସ୍ଥିତିରେ ହିଁ ଗର୍ଭ ଧାରଣ ହୁଏ, ନହେଲେ ଧାରଣ ହୋଇ ନଥାନ୍ତା ।

ସେ ପ୍ରଥମେ ତ ଅଣ୍ଡା ପରି ବେହୋସ ଅବସ୍ଥାରେ ରୁହେ ।

**ପ୍ରଶ୍ନକର୍ତ୍ତା :** କୁକୁଡ଼ା ଅଣ୍ଡାରେ କଣା କରି ଜୀବ ଭିତରକୁ ଗଲା ?

**ଦାଦାଶ୍ରୀ :** ନା, ତାହା ତ ଏହି ଲୌକିକରେ ଏପରି, ତୁମେ କହୁଛ, ଲୌକିକରେ ସେହିପରି ଲେଖା ହୋଇଛି । କାହିଁକିନା ଗର୍ଭଧାରଣ ହେବା, ତାହା ତ କାଳ, ସବୁ ସାଇଣ୍ଟିଫିକ ସରକମ୍‌ଷ୍ଟେନ୍ସିୟଲ ଏଭିଡେନ୍ସ, କାଳ ବି ମିଳେ, ସେତେବେଳେ ଧାରଣ ହୁଏ ।

ନଅ ମାସ ଭିତରେ ଜୀବ ରୁହେ ତେବେ ଯାଇ ପ୍ରକଟ ହୁଏ ଆଉ ସାତ ମାସର ଜୀବ ହୋଇଥିବ, ତେବେ ଅଧୁରା ମାସରେ ଜନ୍ମ ହୋଇଗଲା, ଏଣୁ ଅପରିପକ୍ୱ ହୋଇଥାଏ, ତା' ମସ୍ତିଷ୍କ-ଫସ୍ତିଷ୍କ ସବୁ ଅପରିପକ୍ୱ ହୋଇଥାଏ । ସବୁ ଅଙ୍ଗ ଅପରିପକ୍ୱ ହୋଇଥାଏ । ସାତ ମାସରେ ଜନ୍ମ ହେଲା ସେଥିପାଇଁ ଆଉ ଅଠର ମାସରେ ଆସିଲା ତେବେ କଥା ହିଁ ଅଲଗା, ବହୁତ ହାଇ ଲେବଲ୍(ଉଚ୍ଚ କୋଟି) ର ମସ୍ତିଷ୍କ ହୁଏ । ଏଣୁ ନଅ ମାସରୁ ଅଧିକ ଯେତେ ମାସ ହେବ, ସେତେ ତା'ର 'ଟପ' ମସ୍ତିଷ୍କ ହୁଏ, ଜାଣିଛ ଏପରି ?

କ'ଣ କିଛି କହୁ ନାହଁ? ତୁମେ ଏପରି ଶୁଣି ନାହଁ ଯେ ଏ ଅଠର ମାସର ହୋଇଛି ! ଶୁଣିଛ ? ପୂର୍ବରୁ କେବେ ଶୁଣି ନଥିବ, ନୁହେଁ ? ଯେ ଛାଡ଼, ତା' ମା ତ ଅଠର ମାସର ହୋଇଛି, କହୁଛି ! ସେ ତ ବଡ଼ ହୁସିଆର ଅଟେ । ତା' ମା ପେଟରୁ ବାହାରକୁ ବାହାରୁ ହିଁ ନାହିଁ । ଅଠର ମାସ ପର୍ଯ୍ୟନ୍ତ ଆଖଡ଼ା ଜମାଏ ସେଠି ।

## ମଝିରେ ସମୟ କେତେ ?

**ପ୍ରଶ୍ନକର୍ତ୍ତା :** ତାହେଲେ ଏହି ଦେହ ଛାଡ଼ିବା ଏବଂ ଅନ୍ୟ ଏକ ଧାରଣ କରିବା, ସେ ଦୁଇ ପ୍ରକ୍ରିୟା ଭିତରେ ଏମିତିରେ କେତେ ସମୟ ଲାଗେ ?

**ଦାଦାଶ୍ରୀ :** କିଛି ବି ସମୟ ଲାଗେ ନାହିଁ । ଏଠି ବି ଥାଏ, ଏହି ଦେହରୁ ଏବେ ଏଠୁ ବାହାରୁ ଥାଏ ଏବଂ ସେଠି ଯୋନିରେ ଉପସ୍ଥିତ ଥାଏ, କାହିଁକିନା ଏହା ଟାଇମିଙ୍ଗ୍ ଅଟେ । ବୀର୍ଯ୍ୟ ଏବଂ ରଜର ସଂଯୋଗ ହୁଏ, ସେହି ସମୟରେ । ଏଠାରେ ଦେହ ଛୁଟିବାକୁ ଥିବ, ସେଠାରେ ସେ ସଂଯୋଗ ହୁଏ, ସେ ସବୁ ଏକାଠି ହେବ

ତେବେ ଏଠାରୁ ଯାଏ । ନହେଲେ ସେ ଏଠାରୁ ଯାଆନ୍ତା ହିଁ ନାହିଁ, ଅର୍ଥାତ ମନୁଷ୍ୟର ମୃତ୍ୟୁ ପରେ ଆତ୍ମା ଏଠାରୁ ସିଧା ଅନ୍ୟ ଏକ ଯୋନିରେ ଯାଏ । ଏଣୁ ଆଗକୁ କ'ଣ ହେବ, ଏହାର କୌଣସି ଚିନ୍ତା କରିବା ପରି ନୁହେଁ ।  କାରଣ ମରିବା ପରେ ଅନ୍ୟ ଏକ ଯୋନି ପ୍ରାପ୍ତ ହୋଇଯାଏ ଏବଂ ସେ ଯୋନିରେ ପ୍ରବେଶ କରିବା ମାତ୍ରେ ସେଠାରେ ଖାଇବା ଇତ୍ୟାଦି ସବୁ ମିଳେ ।

## ତାହାଦ୍ୱାରା ସର୍ଜନ ହୁଏ କାରଣ-ଦେହ

ଜଗତ ଭ୍ରାନ୍ତିବାଲା ଅଟେ, ସେ କ୍ରିୟାକୁ ଦେଖେ, ଧ୍ୟାନକୁ ଦେଖେ ନାହିଁ । ଧ୍ୟାନ ଆସନ୍ତା ଜନ୍ମର ପୁରୁଷାର୍ଥ ଅଟେ ଆଉ କ୍ରିୟା, ତାହା ପୂର୍ବ ଜନ୍ମର ପୁରୁଷାର୍ଥ ଅଟେ । ଧ୍ୟାନ, ତାହା ଆସନ୍ତା ଜନ୍ମରେ ଫଳ ଦେବ । ଧ୍ୟାନ ହେଲା ଅର୍ଥାତ ସେହି ସମୟରେ ବାହାରୁ ପରମାଣୁ ଆକର୍ଷିତ ହୋଇ ଆସନ୍ତି ଏବଂ ସେମାନେ ଧ୍ୟାନ ସ୍ୱରୂପ ହୋଇ ଭିତରେ ସୂକ୍ଷ୍ମତାରେ ସଂଗୃହିତ ହୋଇଯାନ୍ତି ଏବଂ କାରଣ-ଦେହର ସର୍ଜନ ହୁଏ । ଯେତେବେଳେ ଋଣାନୁବନ୍ଧ ଯୋଗୁ ମାତାର ଗର୍ଭକୁ ଯାଏ, ସେତେବେଳେ କାର୍ଯ୍ୟ-ଦେହର ରଚନା ହୋଇଯାଏ । ମଣିଷ ମରେ ସେତେବେଳେ ଆତ୍ମା, ସୂକ୍ଷ୍ମ ଶରୀର ତଥା କାରଣ-ଶରୀର ସାଥିରେ ଯାଆନ୍ତି । ସୂକ୍ଷ୍ମ ଶରୀର ପ୍ରତ୍ୟେକଙ୍କର କମନ୍ ହୋଇଥାଏ, ମାତ୍ର କାରଣ-ଶରୀର ପ୍ରତ୍ୟେକଙ୍କର ତା' ଦ୍ୱାରା ସେବିତ କଜେଜ୍ ଅନୁସାରେ ଅଲଗା-ଅଲଗା ହୋଇଥାଏ । ସୂକ୍ଷ୍ମ-ଶରୀର, ତାହା ଇଲେକ୍ଟ୍ରିକାଲ ବଡୀ ଅଟେ ।

## କାରଣ-କାର୍ଯ୍ୟର ଶୃଙ୍ଖଳା

ମୃତ୍ୟୁ ପରେ ଜନ୍ମ ଏବଂ ଜନ୍ମ ପରେ ମୃତ୍ୟୁ ଅଛି, ବାସ୍ । ଏହା ନିରନ୍ତର ଚାଲୁ ହିଁ ରହିଥାଏ । ଏବେ ଏହି ଜନ୍ମ ଏବଂ ମୃତ୍ୟୁ କାହିଁକି ହେଉଛି ? ତେବେ କହିବା କଜେଜ୍ ଏଣ୍ଡ ଇଫେକ୍ଟ, ଇଫେକ୍ଟ ଏଣ୍ଡ କଜେଜ୍, କାରଣ ଏବଂ କାର୍ଯ୍ୟ, କାର୍ଯ୍ୟ ଏବଂ କାରଣ । ସେଥିରେ ଯଦି କାରଣର ନାଶ କରିବାକୁ ଯିବା, ତେବେ ଏ ସମସ୍ତ 'ଇଫେକ୍ଟ' ବନ୍ଦ ହୋଇଯିବ, ପରେ ନୂଆ ଜନ୍ମ ନେବାକୁ ପଡ଼େ ନାହିଁ !

ଏଠାରେ ସାରା ଜୀବନ କଜେଜ୍ ସୃଷ୍ଟି କରିଥିବ, ସେ ତୁମର 'କଜେଜ୍'

କାହା ପାଖକୁ ଯିବେ ? ଆଉ 'କଜେଜ୍' କରିଥିବ, ଏଣୁ ସେମାନେ ତୁମକୁ କାର୍ଯ୍ୟଫଳ ନଦେଇ ରହିବେ ନାହିଁ । 'କଜେଜ୍'ସୃଷ୍ଟି କରିଛେ, ଏପରି ତୁମକୁ ନିଜକୁ ବୁଝା ପଡୁଛି ?

ପ୍ରତ୍ୟେକ କାର୍ଯ୍ୟରେ 'କଜେଜ୍' ସୃଷ୍ଟି ହୁଏ । ତୁମକୁ କେହି ଜଣେ ଅଯୋଗ୍ୟ କହିଲା ତେବେ ତୁମ ଭିତରେ 'କଜେଜ୍' ସୃଷ୍ଟି ହୁଏ । 'ତୋ ବାପ ଅଯୋଗ୍ୟ' ତାହା ତୁମର 'କଜେଜ୍' କୁହାଯାଏ । ତୁମକୁ ଅଯୋଗ୍ୟ କୁହେ, ସେ ତ ନିୟମାନୁସାରେ କହିଗଲା ଆଉ ତୁମେ ତାହାକୁ ବେଆଇନ କରିଦେଲ । ବୁଝା ପଡ଼ିଲା ନାହିଁ ତୁମକୁ ? କ'ଣ କିଛି କହୁ ନାହଁ ?

**ପ୍ରଶ୍ନକର୍ତ୍ତା :** ଠିକ କଥା ।

**ଦାଦାଶ୍ରୀ :** ଅର୍ଥାତ 'କଜେଜ୍' ଏହି ଜନ୍ମରେ ହୋଇଥାଏ । ତାହାର 'ଇଫେକ୍ଟ' ଆସନ୍ତା ଜନ୍ମରେ ଭୋଗିବାକୁ ପଡ଼େ !

ଏ ତ 'ଇଫେକ୍ଟିଭ'(ପରିଣାମ) ମୋହକୁ 'କଜେଜ୍'(କାରଣ) ମୋହ ମାନି ବସେ । ତୁମେ କେବଳ ଏପରି ମାନୁଛ ଯେ 'ମୁଁ କ୍ରୋଧ କରୁଛି' କିନ୍ତୁ ଏହା ତ ତୁମକୁ ଭ୍ରାନ୍ତି ଅଛି, ସେପର୍ଯ୍ୟନ୍ତ ହିଁ ସେ କ୍ରୋଧ ଅଛି । ନହେଲେ, ତାହା କ୍ରୋଧ ଅଟେ ହିଁ ନାହିଁ, ତାହା ତ ଇଫେକ୍ଟ ଅଟେ । ଆଉ କଜେଜ୍ ବନ୍ଦ ହୋଇଯାଏ, ତେବେ କେବଳ ଇଫେକ୍ଟ ହିଁ ରହେ । ଏବଂ ସେ 'କଜେଜ୍' ବନ୍ଦ କଲା ସେଥିପାଇଁ 'ହି ଇଜ୍ ନଟ୍ ରିସ୍ପନ୍ସିବଲ ଫର୍ ଇଫେକ୍ଟ'(ପରିଣାମ ପାଇଁ ନିଜେ ଦାୟୀ ନୁହେଁ) ଏବଂ 'ଇଫେକ୍ଟ' ନିଜର ପ୍ରଭାବ ନ ଦେଖାଇ ରହିବ ହିଁ ନାହିଁ ।

## କାରଣ ବନ୍ଦ ହୁଏ ?

**ପ୍ରଶ୍ନକର୍ତ୍ତା :** ଦେହ ଏବଂ ଆତ୍ମା ମଧ୍ୟରେ ସମ୍ବନ୍ଧ ତ ଅଛି ନା ?

**ଦାଦାଶ୍ରୀ :** ଏ ଦେହ ଅଛି, ତାହା ଆତ୍ମାର ଅଜ୍ଞାନ ଦଶାର ପରିଣାମ ଅଟେ । ଯେଉଁ ଯେଉଁ 'କଜେଜ୍' କରିଛେ, ତାହାର ଏହା 'ଇଫେକ୍ଟ' ଅଟେ । କେହି ତୁମକୁ ଫୁଲ ଚଢ଼ାଏ ତେବେ ତୁମେ ଖୁସି ହୋଇଯାଅ ଆଉ ତୁମକୁ ଗାଳି ଦିଏ ତେବେ ତୁମେ ଚିଡ଼ିଯାଅ । ସେ ଚିଡ଼ିବା ଏବଂ ଖୁସି ହେବାରେ ବାହ୍ୟ ଦର୍ଶନର ମୂଲ୍ୟ ନାହିଁ ।

ଅନ୍ତର ଭାବ ଦ୍ୱାରା କର୍ମ ଚାର୍ଜ ହୁଏ, ଆସନ୍ତା ଜନ୍ମରେ ପୁଣି ତାହାର 'ଡିସଚାର୍ଜ' ହୁଏ । ସେ ସମୟରେ ତାହା 'ଇଫେକ୍ଟିଭ' ଅଟେ । ଏ ମନ-ବଚନ-କାୟା ତିନିହେଁ 'ଇଫେକ୍ଟିଭ' ଅଟନ୍ତି । 'ଇଫେକ୍ଟ' ଭୋଗିବା ସମୟରେ ଅଲଗା ନୂଆ 'କଜେଜ୍' ଉତ୍ପନ୍ନ ହୁଏ, ଯାହା ଆସନ୍ତା ଜନ୍ମରେ ପୁଣି 'ଇଫେକ୍ଟିଭ' ହୁଏ । ଏହିପରି 'କଜେଜ୍ ଏଣ୍ଡ୍ ଇଫେକ୍ଟ', 'ଇଫେକ୍ଟ ଏଣ୍ଡ୍ କଜେଜ୍' ଏହି କ୍ରମ ନିରନ୍ତର ଚାଲୁ ରହିଥାଏ ।

କେବଳ ମନୁଷ୍ୟ ଜନ୍ମରେ ହିଁ 'କଜେଜ୍' ବନ୍ଦ ହୋଇ ପାରିବ, ଏପରି ଅଟେ । ଅନ୍ୟ ସବୁ ଗତିରେ ତ କେବଳ 'ଇଫେକ୍ଟ' ହିଁ ଥାଏ । ଏଠାରେ 'କଜେଜ୍ ଏଣ୍ଡ ଇଫେକ୍ଟ' ଉଭୟ ଅଛନ୍ତି । ମୁଁ ଜ୍ଞାନ ଦିଏ, ସେତେବେଳେ 'କଜେଜ୍' ବନ୍ଦ କରିଦିଏ । ପରେ ନୂଆ 'ଇଫେକ୍ଟ' ହୁଏ ନାହିଁ ।

## ସେପର୍ଯ୍ୟନ୍ତ ଭଟକିବାକୁ ହେବ...

'ଇଫେକ୍ଟିଭ ବଡୀ' ଅର୍ଥାତ ଏ ମନ-ବଚନ-କାୟାର ତିନି ବ୍ୟାଟେରୀ ପ୍ରସ୍ତୁତ ହୋଇଯାଏ ଏବଂ ସେଥିରୁ ପୁଣି ନୂଆ କଜେଜ୍ ଉତ୍ପନ୍ନ ହୋଇ ଚାଲିଥାଏ । ଅର୍ଥାତ ଏହି ଜନ୍ମରେ ମନ-ବଚନ-କାୟା ଡିସଚାର୍ଜ ହୋଇ ଚାଲିଥାଏ ଏବଂ ଅପର ପାର୍ଶ୍ୱରେ ଭିତରେ ନୂଆ ଚାର୍ଜ ହୋଇ ଚାଲୁଥାଏ । ଯେଉଁ ମନ-ବଚନ-କାୟାର ବ୍ୟାଟେରୀ ଚାର୍ଜ ହେଉଥାଏ, ତାହା ଆସନ୍ତା ଭବ ପାଇଁ ଅଟେ ଆଉ ଏମାନେ ବିଗତ ଭବର ଅଟନ୍ତି, ସେମାନେ ଏବେ ଡିସଚାର୍ଜ ହେଉଥାନ୍ତି । 'ଜ୍ଞାନୀପୁରୁଷ' ନୂଆ ଚାର୍ଜ ବନ୍ଦ କରିଦିଅନ୍ତି ଏଣୁ ପୁରୁଣା 'ଡିସଚାର୍ଜ' ହୋଇଚାଲେ ।

ଏଣୁ ମୃତ୍ୟୁ ପଶ୍ଚାତ୍ ଆତ୍ମା ଅନ୍ୟ ଏକ ଯୋନିରେ ଯାଏ । ଯେପର୍ଯ୍ୟନ୍ତ ନିଜର 'ସେଲ୍ଫର ରିଅଲାଇଜ୍' (ଆତ୍ମାର ପରିଚୟ) ହୁଏ ନାହିଁ, ସେପର୍ଯ୍ୟନ୍ତ ସବୁ ଯୋନିରେ ଭଟକି ଚାଲିଥାଏ । ଯେପର୍ଯ୍ୟନ୍ତ ମନରେ ତନ୍ମୟାକାର ହେଉଥାଏ, ବୁଦ୍ଧିରେ ତନ୍ମୟାକାର ହେଉଥାଏ, ସେପର୍ଯ୍ୟନ୍ତ ସଂସାର ଚାଲୁ ରହିଥାଏ । କାହିଁକିନା ତନ୍ମୟାକାର ହେବା ଅର୍ଥାତ ଯୋନିରେ ବୀଜ ପଡ଼ିବା ଆଉ କୃଷ୍ଣ ଭଗବାନ କହିଛନ୍ତି ଯେ ଯୋନିରେ ବୀଜ ପଡୁଛି ଏବଂ ତାହା ଦ୍ୱାରା ଏହି ସଂସାର ଚାଲୁରହିଛି । ଯୋନିରେ ବୀଜ ପଡ଼ିବା ବନ୍ଦ ହୋଇଗଲା ମାନେ ତା'ର ସଂସାର ସମାପ୍ତ ହୋଇଗଲା ।

## ବିଜ୍ଞାନ ବକ୍ରଗତିବାଲା ଅଟେ

**ପ୍ରଶ୍ନକର୍ତ୍ତା :** 'ଥିଓରୀ ଅଫ ଇଭୋଲ୍ୟୁଶନ'(ବିବର୍ତ୍ତନବାଦ) ଅନୁସାରେ ଜୀବ ଏକ ଇନ୍ଦ୍ରିୟ, ଦୁଇ ଇନ୍ଦ୍ରିୟ ଏପରି 'ଡେଭଲପ୍' ହୋଇ ହୋଇ ମନୁଷ୍ୟରେ ଆସେ ଆଉ ମନୁଷ୍ୟରୁ ଫେରି ପୁଣି ପଶୁରେ ଯାଏ । ତେବେ ଏହି 'ଇଭୋଲ୍ୟୁଶନ ଥିଓରୀ' ରେ ଟିକେ ବିରୋଧାଭାଷ ଲାଗୁଛି । ତାହା ଟିକେ ସ୍ପଷ୍ଟ କରି ଦିଅନ୍ତୁ ।

**ଦାଦାଶ୍ରୀ :** ନା । ସେଥିରେ ବିରୋଧାଭାଷ ନାହିଁ । 'ଇଭୋଲ୍ୟୁଶନ ର ଥିଓରୀ' ସବୁ ଠିକ ଅଟେ । କେବଳ ମନୁଷ୍ୟ ପର୍ଯ୍ୟନ୍ତ ହିଁ 'ଇଭୋଲ୍ୟୁଶନ ର ଥିଓରୀ' କରେକ୍ଟ ଅଟେ, ପରେ ତା' ଆଗର କଥା ସେମାନେ ଜାଣି ହିଁ ନାହାଁନ୍ତି ।

**ପ୍ରଶ୍ନକର୍ତ୍ତା :** ମନୁଷ୍ୟରୁ ପୁଣି ପଶୁରେ ଯାଏ କି ? ପ୍ରଶ୍ନ ଏହା ଅଟେ ।

**ଦାଦାଶ୍ରୀ :** ଏପରି ଅଟେ, ପ୍ରଥମେ ଡାର୍ବିନଙ୍କ ଥିଓରୀ 'ବିବର୍ତ୍ତନବାଦ' ଅନୁସାରେ ଡେଭଲପ୍ ହୋଇ ହୋଇ ମନୁଷ୍ୟ ପର୍ଯ୍ୟନ୍ତ ଆସେ ଏବଂ ମନୁଷ୍ୟରେ ଆସେ ସେଥିପାଇଁ 'ଇଗୋଇଜମ୍'(ଅହଂକାର) ସାଥିରେ ଥିବା ଯୋଗୁଁ କର୍ତ୍ତା ହୁଏ । କର୍ମର କର୍ତ୍ତା ହୁଏ, ଏଣୁ ପୁଣି କର୍ମ ଅନୁସାରେ ତା'କୁ ଭୋଗିବା ପାଇଁ ଯିବାକୁ ପଡ଼େ । 'ଡେବିଟ୍'(ପାପ) କରେ, ତେବେ ପଶୁରେ ଯିବାକୁ ପଡ଼େ ଏବଂ 'କ୍ରେଡ଼ିଟ୍'(ପୁଣ୍ୟ) କରେ, ତେବେ ଦେବଗତିରେ ଯିବାକୁ ପଡ଼େ ଅଥବା ନହେଲେ ମନୁଷ୍ୟଗତିରେ ରାଜାପଦ ମିଳେ । ଅର୍ଥାତ ମନୁଷ୍ୟରେ ଆସିବା ପରେ ପୁଣି 'କ୍ରେଡ଼ିଟ୍'ଏବଂ 'ଡେବିଟ୍' ଉପରେ ଆଧାରିତ ଅଟେ ।

## ପରେ ନାହିଁ ଚୌରାଅଶୀ ଯୋନି

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏପରି କୁହନ୍ତି ନା ଯେ ମାନବ ଜନ୍ମ, ଯାହା ଚୌରାଅଶୀ ଲକ୍ଷ ଯୋନିରେ ଭଟକିକରି ଆସିବା ପରେ ମିଳିଛି, ସେ ପୁଣି ଥରେ ସେତିକି ଭଟକିବା ପରେ ମାନବ ଜନ୍ମ ମିଳେ ନା ?

**ଦାଦାଶ୍ରୀ :** ନା, ଏପରି କିଛି ନାହିଁ । ଥରେ ମନୁଷ୍ୟଜନ୍ମରେ ଆସିଲା ପରେ ପୁରା ଚୌରାଅଶୀରେ ଭଟକିବାକୁ ପଡ଼େ ନାହିଁ । ତା'କୁ ଯଦି ପାଶବତାର ବିଚାର

ଆସେ, ତେବେ ଅଧିକରୁ ଅଧିକ ଆଠ ଜନ୍ମ ତା'କୁ ପଶୁ ଯୋନିରେ ଯିବାକୁ ପଡ଼େ, ତାହା ମଧ୍ୟ କେବଳ ଶହେ-ଦୁଇଶହ ବର୍ଷ ପାଇଁ । ପରେ ପୁଣି ଏଇଠିକୁ ଏଇଠି ମନୁଷ୍ୟରେ ଆସେ । ଥରେ ମନୁଷ୍ୟ ହେବା ପଶ୍ଚାତ ଚୌରାଅଶି ଲକ୍ଷ ଫେରା ଭଟକିବାକୁ ହୁଏ ନାହିଁ ।

**ପ୍ରଶ୍ନକର୍ତ୍ତା :** ଗୋଟିଏ ହିଁ ଆତ୍ମା ଚୌରାଅଶି ଲକ୍ଷ ଫେରା ବୁଲୁଥାଏ ନା ?

**ଦାଦାଶ୍ରୀ :** ହଁ, ଗୋଟିଏ ହିଁ ଆତ୍ମା ।

**ପ୍ରଶ୍ନକର୍ତ୍ତା :** ମାତ୍ର ଆତ୍ମା ତ ପବିତ୍ର ଅଟେ ନା ?

**ଦାଦାଶ୍ରୀ :** ଆତ୍ମା ତ ପବିତ୍ର ବର୍ତ୍ତମାନ ବି ଅଛି । ଚୌରାଅଶି ଲକ୍ଷ ଯୋନିରେ ବୁଲିବା ପରେ ମଧ୍ୟ ପବିତ୍ର ଅଛି, ପବିତ୍ର ଥିଲା ଏବଂ ପବିତ୍ର ରହିବ !!

## ବାସନା ଅନୁସାରେ ଗତି

**ପ୍ରଶ୍ନକର୍ତ୍ତା :** ମରିବା ପୂର୍ବରୁ ଯେଉଁଭଳି ବାସନା ଥିବ, ସେହି ରୂପରେ ଜନ୍ମ ହୁଏ ନା ?

**ଦାଦାଶ୍ରୀ :** ହଁ, ସେହି ବାସନା, ଆମ ଲୋକେ ଯେଉଁ କୁହନ୍ତି ନା ଯେ ମରିବା ପୂର୍ବରୁ ଏପରି ବାସନା ଥିଲା, ମାତ୍ର ସେ ବାସନା କେଉଁଠୁ ଆଣିବାକୁ ପଡ଼େ ନାହିଁ । ତାହା ତ ହିସାବ ଅଟେ, ସାରା ଜୀବନର । ସାରା ଜୀବନ ତୁମେ ଯାହା କରିଥିବ, ମୃତ୍ୟୁ ସମୟରେ ଶେଷ ଘଣ୍ଟାଏ ଥାଏ ସେତେବେଳେ ତାହାର ହିସାବ ଆସେ ଏବଂ ସେହି ହିସାବ ଅନୁସାରେ ତା'ର ଗତି ହୋଇଯାଏ ।

## କ'ଣ ମନୁଷ୍ୟରୁ ମନୁଷ୍ୟ ହିଁ ?

**ପ୍ରଶ୍ନକର୍ତ୍ତା :** ମଣିଷରୁ ମଣିଷରେ ହିଁ ଯିବେ ନା ?

**ଦାଦାଶ୍ରୀ :** ତାହା ନିଜ ସମଝରେ(ବୁଝିବାରେ) ଭୁଲ ଅଛି । ବାକି, ସ୍ତ୍ରୀର ଗର୍ଭରୁ ମଣିଷ ହିଁ ଜନ୍ମ ନିଏ । ସେଠି କୋଉ ଗଧ ଜନ୍ମ ହୁଏ ନାହିଁ । ମାତ୍ର ସେ ଏପରି ବୁଝି ବସିଛି ଯେ ମୁଁ ମରିଯିବି ତଥାପି ମଣିଷରେ ହିଁ ଜନ୍ମ ନେବି ତେବେ ତାହା ଭୁଲ । ଆରେ ମୂର୍ଖ, ତୋ ବିଚାର ତ ଗଧ ପରି ଅଟେ, ପୁଣି ମଣିଷ କିପରି ହେବୁ ? ତୋତେ ବିଚାର ଆସେ, କାହାର ଭୋଗିନେବି, କାହାର ନେଇଯିବି, *ଅଣହକ୍କ* ର ଭୋଗିବାର

ବିଚାର ଆସେ, ସେ ବିଚାର ହିଁ ନେଇଯାନ୍ତି, ନିଜ ଗତିରେ !

**ପ୍ରଶ୍ନକର୍ତ୍ତା :** ଜୀବର ଏପରି କିଛି କ୍ରମ ଅଛି ଯେ ମନୁଷ୍ୟରେ ଆସିବା ପରେ ମନୁଷ୍ୟରେ ହିଁ ଆସେ କି ଅଲଗା କେଉଁଠିକୁ ଯାଏ ?

**ଦାଦାଶ୍ରୀ :** ହିନ୍ଦୁସ୍ତାନରେ ମନୁଷ୍ୟ ଜନ୍ମରେ ଆସିବା ପରେ ଚାରି ଗତିରେ ଭଟକିବାକୁ ପଡ଼େ । ଫରେନ୍ ମନୁଷ୍ୟଙ୍କର ଏପରି ନୁହେଁ, ସେମାନଙ୍କ ମଧ୍ୟରେ ଦୁଇ-ପାଞ୍ଚ ପ୍ରତିଶତ *ଅପବାଦ* ଥାଏ । ଅନ୍ୟମାନେ ସବୁ ଉପରକୁ ଚଢ଼ି ଚାଲିଥାନ୍ତି ।

**ପ୍ରଶ୍ନକର୍ତ୍ତା :** ଲୋକେ ଯାହାକୁ ବିଧାତା କୁହନ୍ତି, ସେମାନେ କାହାକୁ କୁହନ୍ତି ?

**ଦାଦାଶ୍ରୀ :** ସେମାନେ ପ୍ରକୃତିକୁ ହିଁ ବିଧାତା କୁହନ୍ତି । ବିଧାତା ନାମରେ କେଉଁ ଦେବୀ ନାହାନ୍ତି । 'ସାଇଣ୍ଟିଫିକ ସରକମ୍‌ଷ୍ଟେନ୍ସିୟଲ ଏଭିଡେନ୍ସ'(ବୈଜ୍ଞାନିକ ସଂଯୋଗଯୁକ୍ତ ପ୍ରମାଣ), ତାହା ହିଁ ବିଧାତା । ଆମ ଲୋକେ ନିଶ୍ଚିତ କଲେ ଯେ ଷଷ୍ଠୀ ଦିନ ବିଧାତା ଭାଗ୍ୟ ଲେଖିଦେଇ ଯାଏ । ବିକଳ୍ପୋନୁସାରେ ଏ ସବୁ ଠିକ ଅଟେ ଆଉ ବାସ୍ତବିକତା ଜାଣିବାର ଅଛି ତେବେ ଏହା ସତ ନୁହେଁ ।

ଏଠି ତ କାନୁନ୍ ଏହା ଯେ ଯିଏ *ଅଣହକ୍କ* ର ନେଲା, ତା'ର ଦୁଇ ଗୋଡ଼ରୁ ଚାରି ଗୋଡ଼ ହୋଇଯିବ । ମାତ୍ର ତାହା ସର୍ବଦା ପାଇଁ ନୁହେଁ । ବେଶିରୁ ବେଶି ଦୁଇଶହ ବର୍ଷ ଆଉ ବହୁତ ହେଲା ତେବେ ସାତ-ଆଠ ଜନ୍ମ ପଶୁ ଗତିରେ ଯାଆନ୍ତି ଆଉ ଅତି କମ୍‌ରେ ମାତ୍ର ପାଞ୍ଚ ମିନିଟ ରେ ହିଁ ପଶୁଗତିରେ ଯାଇ, ପୁଣିଥରେ ମନୁଷ୍ୟରେ ଆସିଯାନ୍ତି । ଅନେକ ଜୀବ ଏପରି ଅଟନ୍ତି ଯେ ଏକ ମିନିଟରେ ସତର ଅବତାର ବଦଳାନ୍ତି, ଅର୍ଥାତ ଏପରି ମଧ୍ୟ ଜୀବ ଅଛନ୍ତି । ଏଣୁ ପଶୁ ଗତିରେ ଗଲେ, ସେ ସମସ୍ତଙ୍କୁ ଶହେ-ଦୁଇଶହ ବର୍ଷର ଆୟୁଷ ମିଳିବାର ନାହିଁ ।

## ତାହା ବୁଝିହୁଏ ଲକ୍ଷଣ ଉପରୁ

**ପ୍ରଶ୍ନକର୍ତ୍ତା :** ଏ ପଶୁ ଯୋନିରେ ଯିବେ, ଏହାର କିଛି ପ୍ରମାଣ ତ ବତାନ୍ତୁ, ତାହା ବୈଜ୍ଞାନିକ ଆଧାରରେ କିପରି ମାନିବୁ ?

**ଦାଦାଶ୍ରୀ :** ଏଠି କେହି ଯିଏ ଭୁକି ଚାଲିଥିବ ଏପରି ମଣିଷ ମିଳିଛନ୍ତି ତୁମକୁ ? 'କାହିଁକି ଭୁକୁଛୁ ?' ଏପରି ତୁମେ ତା'କୁ କହିଥିଲ କି ? ସେ ସେଇଠୁ,

କୁକୁରରୁ ଆସିଛି । କେହି ମାଙ୍କଡ଼ ଭଳି ଆଚରଣ କରନ୍ତି, ଏପରି ହୋଇଥାନ୍ତି ! ସେମାନେ ସେଇଠୁ ଆସିଥାନ୍ତି । କେହି ବିଲେଇ ପରି ଏମିତି ଚାହିଁକି ବସି ରହିଥାନ୍ତି, ତୁମର କିଛି ନେଇଯିବା ପାଇଁ, ଛଡ଼େଇ ନେବା ପାଇଁ । ସେମାନେ ସେଇଠୁ ଆସିଥାନ୍ତି । ଅର୍ଥାତ ଏଠାକୁ ସେମାନେ କେଉଁଠୁ ଆସିଛନ୍ତି, ତାହା ମଧ୍ୟ ଜାଣି ପାରିବା ଏବଂ କେଉଁଠିକୁ ଯିବେ, ତାହା ମଧ୍ୟ ଜାଣି ପାରିବା । ଏବଂ ତାହା ବି ପୁଣି ସର୍ବଦା ପାଇଁ ନୁହେଁ । ଏ ଲୋକମାନେ ତ କିପରି ଅଟନ୍ତି, ଏମାନଙ୍କୁ ପାପ କରିବା ମଧ୍ୟ ଆସେ ହିଁ ନାହିଁ ।

ଏହି କଳିଯୁଗର ଲୋକଙ୍କୁ ପାପ କରିବା ଆସେ ନାହିଁ ଆଉ କରନ୍ତି କେବଳ ପାପ ହିଁ! ଏଣୁ ତାଙ୍କର ପାପର ଫଳ କିପରି ହୋଇଥାଏ? ବହୁତ ହେଲା ତ ପଚାଷ-ଶହେ ବର୍ଷ ପଶୁଗତିରେ ଯାଇ ପୁଣି ଫେରି ଏଇଠିକୁ ଏଇଠି ଆସେ, ହଜାରେ ବର୍ଷ କି ଲକ୍ଷେ ବର୍ଷ ନୁହେଁ । ଆଉ କେତେ ତ ପାଞ୍ଚ ବର୍ଷରେ ହିଁ ପଶୁଗତିରେ ଯାଇ ଫେରି ଆସନ୍ତି । ଏଣୁ ପଶୁଗତିରେ ଯିବା, ତାହାକୁ ଦୋଷ ବୁଝିବ ନାହିଁ । କାହିଁକିନା ସେମାନେ ତ ତୁରନ୍ତ ଫେରି ଆସନ୍ତି, ବିଚରାମାନେ ! କାହିଁକିନା ଏଭଳି ପାପ ହିଁ କରନ୍ତି ନାହିଁ ନା ! ଏମାନଙ୍କର ଶକ୍ତି ହିଁ ନାହିଁ ଏଭଳି ପାପ କରିବା ପାଇଁ ।

## ନିୟମ, ହାନି-ବୃଦ୍ଧିର

**ପ୍ରଶ୍ନକର୍ତ୍ତା :** ଏ ମଣିଷଙ୍କ ଜନସଂଖ୍ୟା ବଢ଼ି ଚାଲିଛି, ଏହାର ଅର୍ଥ କ'ଣ ଏପରି ଯେ ପଶୁ-ପକ୍ଷୀ କମ୍ ହୋଇଛନ୍ତି ?

**ଦାଦାଶ୍ରୀ :** ହଁ, ଠିକ କଥା । ଯେତିକି ଆତ୍ମା ଅଛି, ସେତିକି ହିଁ ଆତ୍ମା ରୁହେ, କିନ୍ତୁ କନ୍‌ବର୍ଜନ(ରୁପାନ୍ତର) ହୋଇ ଚାଲିଥାଏ । କେବେ ମନୁଷ୍ୟ ବଢ଼ିଯାନ୍ତି, ସେତେବେଳେ ପଶୁ-ପକ୍ଷୀ କମ୍ ହୁଅନ୍ତି ଆଉ କେବେ ପଶୁ-ପକ୍ଷୀ ବଢ଼ିଯାନ୍ତି, ସେତେବେଳେ ମନୁଷ୍ୟ କମ୍ ହୋଇଯାନ୍ତି । ଏପରି କନ୍‌ବର୍ଜନ ହୋଇ ଚାଲିଥାଏ । ଏବେ ପୁଣି ଥରେ ମନୁଷ୍ୟ କମିବେ । ଏବେ ବର୍ଷ ୧୯୯୩ରୁ ଆରମ୍ଭ ହେବ କମିବାର !

ଲୋକେ କାଲ୍‌କ୍ୟୁଲେଶନ୍(ଗଣତି) ଲଗାନ୍ତି ଯେ ବର୍ଷ ୨୦୦୦ ରେ ଏମିତି ହୋଇଯିବ ଆଉ ସେମିତି ହୋଇଯିବ, ହିନ୍ଦୁସ୍ତାନର ଜନସଂଖ୍ୟା ବଢ଼ିଯିବ, ପୁଣି ଆମେ କ'ଣ ଖାଇବୁ ? ଏପରି କାଲ୍‌କ୍ୟୁଲେଶନ କରନ୍ତି, କରନ୍ତିନି ? ତାହା କାହା ଭଳି ଅଟେ ? ଉଦାହରଣ କହିବି ?

ଏକ ଚଉଦ ବର୍ଷର ପିଲା ଥିବ, ତା'ର ଉଚ୍ଚତା ଚାରି ଫୁଟ ଚାରି ଇଞ୍ଚ ହୋଇଥିବ ଏବଂ ଅଠର ବର୍ଷରେ ପାଞ୍ଚ ଫୁଟ ଲମ୍ବା ହେବ । ତେବେ କୁହନ୍ତି, ଚାରି ବର୍ଷରେ ଆଠ ଇଞ୍ଚ ବଢ଼ିଲା, ତେବେ ସତୁରୀ ବର୍ଷରେ କେତେ ହେବ ? ଏପରି କାଲ୍‌କ୍ୟୁଲେଶନ କରିବା, ସେହିପରି ଏ ଜନସଂଖ୍ୟାର କାଲ୍‌କ୍ୟୁଲେଶନ କରନ୍ତି !

## ପିଲାମାନଙ୍କୁ ଦୁଃଖ କାହିଁକି ?

**ପ୍ରଶ୍ନକର୍ତ୍ତା :** ନିର୍ଦ୍ଦୋଷ ବାଳକକୁ ଶାରୀରିକ ବେଦନା ଭୋଗିବାକୁ ପଡ଼େ ତାହାର କାରଣ କ'ଣ ?

**ଦାଦାଶ୍ରୀ :** ବାଳକର କର୍ମର ଉଦୟ ବାଳକକୁ ଭୋଗିବାକୁ ହେବ ଏବଂ 'ମଦର'କୁ ତାହା ଦେଖିକରି ଭୋଗିବାକୁ ହେବ । ମୂଳ କର୍ମ ବାଳକର, ସେଥିରେ 'ମଦର'ର ଅନୁମୋଦନ ଥିଲା, ଏଣୁ 'ମଦର'କୁ ଦେଖିକରି ଭୋଗିବାକୁ ହେବ । କରିବା, କରାଇବା ଏବଂ ଅନୁମୋଦନ କରିବା ଏ ତିନି କର୍ମ ବନ୍ଧନର କାରଣ ଅଟେ ।

## ମନୁଷ୍ୟ ଭବର ମାହାତ୍ମ୍ୟ

ମନୁଷ୍ୟ ଦେହରେ ଆସିବା ପରେ ଅନ୍ୟ ଗତିରେ ଯେପରିକି ଦେବ, ତିର୍ଯ୍ୟଁଚ ଅଥବା ନର୍କରେ ଯାଇ ଆସିବା ପରେ ପୁଣିଥରେ ମନୁଷ୍ୟ ଦେହ ପ୍ରାପ୍ତ ହୁଏ । ଏବଂ ଭଟକିବାର ଅନ୍ତ ମଧ୍ୟ ମନୁଷ୍ୟ ଦେହରେ ହିଁ ମିଳେ । ଏହି ମନୁଷ୍ୟ ଦେହ ଯଦି ସାର୍ଥକ କରିବା ଆସିଲା ତେବେ ମୋକ୍ଷର ପ୍ରାପ୍ତି ହୋଇପାରିବ ଏପରି ଅଟେ ଆଉ ନ ଆସିଲା ତେବେ ଭଟକିବାର ସାଧନ ବଢ଼ାଇ ଦିଏ, ସେପରି ମଧ୍ୟ ଅଟେ ! ଅନ୍ୟ ଗତିରେ କେବଳ ମୁକ୍ତ ହୁଏ । ଏଥିରେ ଦୁଇଟି ଯାକ ହୁଏ । ମୁକ୍ତ ହେଉଥାଏ ଏବଂ ସାଥେ-ସାଥେ ବନ୍ଧା ହେଉଥାଏ ମଧ୍ୟ । ଏଣୁ ଦୁର୍ଲଭ ମନୁଷ୍ୟ ଦେହ ପ୍ରାପ୍ତ ହୋଇଛି, ତାହାଦ୍ୱାରା ନିଜର କାମ କାଢ଼ି ନିଅ । ଅନନ୍ତ ଅବତାର ଆତ୍ମା ଦେହ ପାଇଁ ବିତାଇଛି । ଏକ ଅବତାର ଯଦି ଦେହ ଆତ୍ମା ପାଇଁ ବାହାର କରେ ତେବେ କାମ ହିଁ ହୋଇଯିବ !

ମନୁଷ୍ୟ ଦେହରେ ହିଁ ଯଦି ଜ୍ଞାନୀପୁରୁଷ ମିଳନ୍ତି ତେବେ ମୋକ୍ଷର ଉପାୟ ହୋଇଯାଏ । ଦେବତା ମଧ୍ୟ ମନୁଷ୍ୟ ଦେହ ପାଇଁ ବ୍ୟାକୁଳ ହୁଅନ୍ତି । ଜ୍ଞାନୀପୁରୁଷଙ୍କ ସହ ଭେଟ ହେବା ପରେ, ତାର ଜୋଡ଼ି ସାରିବା ପରେ, ଅନନ୍ତ ଜନ୍ମ ପର୍ଯ୍ୟନ୍ତ ଶତ୍ରୁ ସମାନ ଥିବା ଦେହ ପରମ ମିତ୍ର ହୋଇଯାଏ ! ଏଣୁ, ଏହି ଦେହରେ ତୁମକୁ ଜ୍ଞାନୀପୁରୁଷ

ମିଳିଛନ୍ତି, ତେବେ ପୁରା ପୁରା କାମ କାଢ଼ିନିଅ । ପୁରା ପୁରି ଅଣ୍ଟା ଭିଡ଼ି କୂଳପାରିରେ ପହଞ୍ଚି ଯାଅ ।

## ଅଜନ୍ମ-ଅମର କୁ ଆବାଗମନ କେଉଁଠୁ ?

**ପ୍ରଶ୍ନକର୍ତ୍ତା :** ପରନ୍ତୁ ଆବାଗମନର ଫେରା କାହାକୁ ହୁଏ ?

**ଦାଦାଶ୍ରୀ :** ଯେଉଁ ଅହଂକାର ଅଛି ନା, ତା'କୁ ଆବାଗମନ ହୁଏ । ଆତ୍ମା ତ ମୂଳ ଦଶାରେ ହିଁ ଅଛି । ଅହଂକାର ପୁଣି ବନ୍ଦ ହୋଇଯାଏ, ଏଣୁ ତା'ର ଫେରା ବନ୍ଦ ହୋଇଯାଏ !

## ପରେ ମୃତ୍ୟୁର ବି ଭୟ ନାହିଁ

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏହି ସନାତନ ଶାନ୍ତି ପ୍ରାପ୍ତ କରିବୁ ତେବେ ତାହା ଏହି ଜନ୍ମ ପାଇଁ ଅଟେ ନା ଜନ୍ମୋଜନ୍ମ ପାଇଁ ଅଟେ ?

**ଦାଦାଶ୍ରୀ :** ନା । ତାହା ତ ପରମାନେଣ୍ଟ ହୋଇଗଲା । ପୁଣି କର୍ତ୍ତା ହିଁ ରହିଲା ନାହିଁ, ଏଣୁ କର୍ମବନ୍ଧନ ହୁଏ ନାହିଁ । ଗୋଟେ-ଅଧେ ଅବତାରରେ ଅଥବା ଦୁଇ ଅବତାରରେ ମୋକ୍ଷ ହୁଏ ହିଁ ହୁଏ, ଚାରା ହିଁ ନାହିଁ, ଚାଲେ ହିଁ ନାହିଁ । ଯାହାକୁ ମୋକ୍ଷରେ ଯିବାକୁ ନଥିବ, ତା'କୁ ଏହି ଧନ୍ଦା ହିଁ କରିବା କଥା ନୁହେଁ । ଏହି ଲାଇନ୍‌ରେ ପଡ଼ିବ ହିଁ ନାହିଁ । ଯାହାକୁ ମୋକ୍ଷ ପସନ୍ଦ ନଥିବ, ତେବେ ଏହି ଲାଇନ୍‌ରେ ପଡ଼ିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ଏ ସବୁ 'ଜ୍ଞାନ' ଅଛି, ତାହା ଆର ଜନ୍ମରେ ଗଲେ ମନେ ରୁହେ ?

**ଦାଦାଶ୍ରୀ :** ସବୁ ସେହି ରୂପରେ ହିଁ ରହିବ । ବଦଳିବ ହିଁ ନାହିଁ । କାହିଁକିନା କର୍ମ ବନ୍ଧାହୁଏ ନାହିଁ, ଏଣୁ ପୁଣି ସମସ୍ୟା ହିଁ ସୃଷ୍ଟି ହୁଏ ନାହିଁ ନା !

**ପ୍ରଶ୍ନକର୍ତ୍ତା :** ତେବେ ଏହାର ଅର୍ଥ ଏପରି ହେଲା ଯେ ଆମର ଗତ ଜନ୍ମର ଏପରି କର୍ମ ଥାଏ, ଯାହାକୁ ନେଇ ହିସାବ(ସମସ୍ୟା) ଚାଲୁ ରହିଥାଏ ।

**ଦାଦାଶ୍ରୀ :** ପଛ ଅବତାରରେ ଅଜ୍ଞାନତାରୁ କର୍ମ ବନ୍ଧା ହେଲା, ସେହି କର୍ମର ଏହା ଏବେ ଇଫେକ୍ଟ ଅଟେ । ଇଫେକ୍ଟ ଭୋଗିବାକୁ ପଡ଼େ । ଇଫେକ୍ଟ ଭୋଗୁ-

ଭୋଗୁ, ପୁଣି ଯଦି ଜ୍ଞାନୀ ମିଳିଲେ ନାହିଁ, ତେବେ ପୁଣି ଥରେ ନୂଆ କଜେଜ୍ ଏବଂ ପରିଣାମ ସ୍ୱରୂପ ନୂଆ ଇଫେକ୍ଟ ସୃଷ୍ଟି ହୋଇ ଚାଲିଥାଏ । ଇଫେକ୍ଟରୁ ପୁଣି କଜେଜ୍ ଉତ୍ପନ୍ନ ହୋଇଚାଲିବ ଏବଂ ସେ କଜେଜ୍ ପୁଣି ଆସନ୍ତା ଜନ୍ମରେ ଇଫେକ୍ଟ ହେବ । କଜେଜ୍ ଏଣ୍ଡ ଇଫେକ୍ଟ, ଇଫେକ୍ଟ ଏଣ୍ଡ କଜେଜ୍, କଜେଜ୍ ଏଣ୍ଡ ଇଫେକ୍ଟ, ଇଫେକ୍ଟ ଏଣ୍ଡ କଜେଜ୍, କଜେଜ୍ ଏଣ୍ଡ ଇଫେକ୍ଟ ତାହା ଚାଲୁ ହିଁ ରହିଥାଏ । ଏଣୁ ଜ୍ଞାନୀପୁରୁଷ ଯେବେ କଜେଜ୍ ବନ୍ଦ କରି ଦିଅନ୍ତି, ତେବେ କେବଳ ଇଫେକ୍ଟ ହିଁ ଭୋଗିବାକୁ ରହିଲା । ଅର୍ଥାତ କର୍ମବନ୍ଧନ ବନ୍ଦ ହୋଇଗଲା ।

ଏଣୁ ସବୁ 'ଜ୍ଞାନ' ସ୍ମରଣ ରୁହେ ହିଁ ରୁହେ, କେବଳ ଏତିକି ନୁହେଁ, କିନ୍ତୁ ନିଜେ ସେ ସ୍ୱରୂପ ମଧ୍ୟ ହୋଇଯାଏ । ପରେ ତ ମରିବାର ଭୟ ମଧ୍ୟ ଲାଗେ ନାହିଁ । କାହାର ଭୟ ଲାଗେ ନାହିଁ, ନିର୍ଭୟତା ରୁହେ ।

## ଅନ୍ତିମ ସମୟର ଜାଗୃତି

### ଜୀବିତ ଅଛେ, ସେପର୍ଯ୍ୟନ୍ତ

**ପ୍ରଶ୍ନକର୍ତ୍ତା :** ଦାଦାଶ୍ରୀ, ଜ୍ଞାନ ନେବା ପୂର୍ବରୁ, ଏହି ଜନ୍ମର ଯେଉଁ ପର୍ଯ୍ୟାୟ ବାନ୍ଧି(କର୍ମବନ୍ଧନ)ହୋଇ ଯାଇଥିବ, ସେସବୁର ନିରାକରଣ କିପରି ଆସିବ ?

**ଦାଦାଶ୍ରୀ :** ଏବେ ଆମେ ଜୀବିତ ଅଛେ, ସେପର୍ଯ୍ୟନ୍ତ ପଶ୍ଚାତାପ କରି ସେସବୁକୁ ଧୋଇ ଦେବାର ଅଛି, ମାତ୍ର ସେ କିଛି ଥାଏ, ତାହା ପୁରା ନିରାକରଣ ହୁଏ ନାହିଁ । କିନ୍ତୁ ଢିଲା ତ ହୋଇଯାଏ । ଢିଲା ହୋଇଯାଏ, ସେଥିପାଇଁ ଆସନ୍ତା ଭବରେ ହାତ ଲଗାଇବା ମାତ୍ରେ ତୁରନ୍ତ ଗଣ୍ଠି ଫିଟିଯାଏ !

**ପ୍ରଶ୍ନକର୍ତ୍ତା :** ପ୍ରାୟଶ୍ଚିତ ଦ୍ୱାରା ବନ୍ଧ୍ ଫିଟିଯାଏ ?

**ଦାଦାଶ୍ରୀ :** ହଁ, ଫିଟିଯାଏ । କିଛି ପ୍ରକାରର ହିଁ ବନ୍ଧ୍ ଥାଏ, ସେ କର୍ମ ପ୍ରାୟଶ୍ଚିତ କରିବା ଦ୍ୱାରା ମଜବୁତ୍ ଗଣ୍ଠିରୁ ଢିଲା ହୋଇଯାଏ । ଆମ ପ୍ରତିକ୍ରମଣରେ ବହୁତ ଶକ୍ତି ଅଛି । ଦାଦାଙ୍କୁ ହାଜର ରଖି କରିବ ତେବେ କାମ ହୋଇଯିବ ।

### ଏହି ଜ୍ଞାନ ମିଳିବା ପରେ ହିସାବ ମହାବିଦେହର

କର୍ମର ଧକ୍କାରୁ ଅବତାର ହେବାକୁ ଥିବ ତାହା ହେବ, କଦାଚିତ ଏକ-ଦୁଇ

ଅବତାର । ମାତ୍ର ତା'ପରେ ସୀମନ୍ଧର ସ୍ୱାମୀଙ୍କ ପାଖକୁ ଯିବାକୁ ହିଁ ପଡ଼ିବ । ଏଠାକାର ପୂର୍ବର ଧକ୍କା, ହିସାବ ବାନ୍ଧି ଦେଇଛେ ପୂର୍ବରୁ, କିଛି ଗାଢ଼ ହୋଇ ଗଲାଣି ନା, ତ ତାହା ପୂରା ହୋଇଯିବ । ସେଥିରୁ ଛୁଟକାରା ହିଁ ନାହିଁ ନା !

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରିବା ଦ୍ୱାରା କର୍ମର ଧକ୍କା କମ୍ ହୁଏ ?

**ଦାଦାଶ୍ରୀ :** କମ୍ ହୁଏ ନା ! ଏବଂ ଜଲଦୀ ନିବେଡ଼ା ଆସିଯାଏ ।

## 'ମୁଁ' ଏହିପରି ନିବାରଣ କଲି ବିଶ୍ୱ ସହ

ପ୍ରତିକ୍ରମଣ କରି କରି ଯେତେ ଭୁଲ ଖତମ କଲ, ମୋକ୍ଷ ସେତେ ନିକଟକୁ ଆସିଲା ।

**ପ୍ରଶ୍ନକର୍ତ୍ତା :** ଆର ଜନ୍ମରେ ସେ ଫାଇଲମାନେ ପୁଣି ପଛରେ ଲାଖି ରହିବେ ନାହିଁ ତ ?

**ଦାଦାଶ୍ରୀ :** କ'ଣ ନେବା-ଦେବା ? ଆମକୁ ଆର ଜନ୍ମ ସହ କ'ଣ ନେବାର ଅଛି ? ଏଇଠି କୁ ଏଇଠି ଏତେ ପ୍ରତିକ୍ରମଣ କରି ପକାଇବା । ଫୁରୁସତ୍ ମିଳିଲା ମାତ୍ରେ ତା'ପାଇଁ ପ୍ରତିକ୍ରମଣ କରିଚାଲିବା ଉଚିତ । 'ତୁମକୁ' 'ଚନ୍ଦୁଭାଇ'ଙ୍କୁ ଏତକି କହିବାକୁ ପଡ଼ିବ ଯେ ପ୍ରତିକ୍ରମଣ କରିଚାଲ । ତୁମ ଘରର ସମସ୍ତ ସଦସ୍ୟଙ୍କ ସହିତ, ତୁମକୁ କିଛି ନା କିଛି ପୂର୍ବରୁ ଦୁଃଖ ହୋଇଥାଏ । ତାହାର ତୁମକୁ ପ୍ରତିକ୍ରମଣ କରିବାର ଅଛି । ସଂଖ୍ୟାତ୍ ଅବା ଅସଂଖ୍ୟାତ୍ ଜନ୍ମରେ ଯେଉଁ ରାଗ୍-ଦ୍ୱେଷ, ବିଷୟ, କଷାୟର ଦୋଷ କରିଥିବି, ସେସବୁ ପାଇଁ କ୍ଷମା ମାଗୁଛି । ଏହିପରି ପ୍ରତିଦିନ ଜଣେ-ଜଣେ ବ୍ୟକ୍ତିଙ୍କର, ଏପରି ଘରର ପ୍ରତ୍ୟେକ ବ୍ୟକ୍ତିଙ୍କୁ ସ୍ମରଣ କରି କରି କରିବା ଉଚିତ । ପରେ ଆଖ-ପାଖର, ଅଡ଼ୋଶୀ-ପଡ଼ୋଶୀଙ୍କୁ ସମସ୍ତଙ୍କୁ ନେଇ ଉପଯୋଗ ରଖି ଏହା କରିଚାଲିବା ଉଚିତ । ତୁମେ ଯଦି କରିବ ତା'ପରେ ଏହି ବୋଝ ହାଲୁକା ହୋଇଯିବ । ମନକୁ ମନ ହାଲୁକା ହୁଏ ନାହିଁ ।

ମୁଁ ସାରା ବିଶ୍ୱସହ ଏହିପରି ନିବାରଣ କରିଛି । ପ୍ରଥମେ ଏପରି ନିବାରଣ କରିଥିଲି, ସେଥିପାଇଁ ତ ଏ ଛୁଟକାରା ହେଲା । ଯେପର୍ଯ୍ୟନ୍ତ ତୁମ ମନରେ ମୋ ପାଇଁ ଦୋଷ ଅଛି, ସେପର୍ଯ୍ୟନ୍ତ ମୋତେ ଶାନ୍ତିରେ ରହିବାକୁ ଦେବ ନାହିଁ ! ଏଣୁ, ଆମେ ଯେବେ ଏପରି ପ୍ରତିକ୍ରମଣ କରନ୍ତି, ତେବେ ସେଠାରେ ଧୋଇଯାଏ ।

## ମୃତକଙ୍କ ପ୍ରତିକ୍ରମଣ

**ପ୍ରଶ୍ନକର୍ତ୍ତା :** ଯାହାର କ୍ଷମା ମାଗିବାକୁ ଅଛି, ସେହି ବ୍ୟକ୍ତିର ଯଦି ଦେହବିଲୟ ହୋଇ ଯାଇଥିବ, ତେବେ ପ୍ରତିକ୍ରମଣ କିପରି କରିବୁ ?

**ଦାଦାଶ୍ରୀ :** ଦେହବିଲୟ ହୋଇ ଯାଇଥିବ, ତଥାପି ଯଦି ତା'ର ଫଟୋ ଥିବ, ତା'ର ଚେହେରା ମନେ ଥିବ, ତେବେ କରିପାରିବା । ଚେହେରା ଟିକିଏ-ବି ମନେ ନଥିବ ଆଉ ନାଁ ଜଣା ଥିବ, ତେବେ ନାଁ ନେଇ ମଧ୍ୟ କରି ପାରିବା, ତେବେ ତା'କୁ ପହଞ୍ଚି ଯିବ ସବୁ ।

**ପ୍ରଶ୍ନକର୍ତ୍ତା :** ମାନେ ମୃତ ବ୍ୟକ୍ତିର ପ୍ରତିକ୍ରମଣ କେଉଁ ପ୍ରକାରେ କରିବୁ ?

**ଦାଦାଶ୍ରୀ :** ମନ-ବଚନ-କାୟା, ଭାବକର୍ମ, ଦ୍ରବ୍ୟକର୍ମ, ନୋକର୍ମ, ମୃତକର ନାମ ତଥା ତା' ନାମର ସର୍ବମାୟାରୁ ଭିନ୍ନ ଏପରି, ତା'ର ଶୁଦ୍ଧାତ୍ମାଙ୍କୁ ସ୍ମରଣ କରିବ, ଏବଂ ପରେ 'ଏପରି ଭୁଲ କରିଥିଲି' ସେସବୁ ସ୍ମରଣ କରିବ(ଆଲୋଚନା) । ସେସବୁ ଦୋଷ ପାଇଁ ମୋତେ ପଶ୍ଚାତାପ ହେଉଛି ଏବଂ ସେସବୁ ପାଇଁ ମୋତେ କ୍ଷମା କରନ୍ତୁ(ପ୍ରତିକ୍ରମଣ) । ସେପରି ଦୋଷ ହେବ ନାହିଁ ଏପରି ଦୃଢ଼ *ନିଶ୍ଚୟ* କରୁଛି । ଏପରି ସ୍ଥିର କରିବାର ଅଛି(ପ୍ରତ୍ୟାଖ୍ୟାନ) । 'ଆମେ' ନିଜେ ଚନ୍ଦୁଭାଇର ଜ୍ଞାତା-ଦ୍ରଷ୍ଟା ରହିବା ଏବଂ ଜାଣିବା ଯେ ଚନ୍ଦୁଭାଇ କେତେ ପ୍ରତିକ୍ରମଣ କଲେ, କେତେ ସୁନ୍ଦର କଲେ ଏବଂ କେତେଥର କଲେ ।

**- ଜୟ ସଚ୍ଚିଦାନନ୍ଦ**

## ମୂଳ ଗୁଜରାଟୀ ଶବ୍ଦର ସମାନାର୍ଥୀ ଶବ୍ଦ

*ଆରି* : ଛୋଟ ଲୁହା କଟା କରତ

*ବନ୍ଧ୍* : ବନ୍ଧନ

*ଅଣହକ୍କ* : ବିନା ହକ୍କ, ଅବୈଧ

*ଉପାଧି* : ବାହାରୁ ଆସୁଥିବା ଦୁଃଖ

ଦଶା : ଅବସ୍ଥା,ସ୍ଥିତି

ଭାନ୍ : ହୋସ୍, ଜାଗୃତି

ତିର୍ଯଁଚ : ପଶୁପକ୍ଷୀ, ବୃକ୍ଷଲତା

ରାଗ୍-ଦ୍ୱେଷ : ଆସକ୍ତି-ଘୃଣା

*ନିଶ୍ଚୟ* : ସଙ୍କଳ୍ପ

*କଳ୍ପ* : କାଳଚକ୍ର

ଶମନ : ଶାନ୍ତ

ସମଝ୍ : ଦୃଷ୍ଟି

ସମଝଦାର : ବିଜ୍ଞ

*ପୋଲମପୋଲ୍* : ଫମ୍ପା

ଅପବାଦ : ବ୍ୟତିକ୍ରମ

*ନୋଂଧ୍* : ଅତ୍ୟନ୍ତ ରାଗ୍ ଅଥବା ଦ୍ୱେଷ ସହିତ ଲମ୍ବା ସମୟ ପର୍ଯ୍ୟନ୍ତ ମନେ ରଖିବା, ନୋଟ୍ କରିବା

## ଅନ୍ତିମ ସମୟର ପ୍ରାର୍ଥନା

ଯାହାର ଅନ୍ତିମ ସମୟ ଆସି ଯାଇଥିବ, ତା'ଙ୍କୁ ଏହିପରି ପ୍ରାର୍ଥନା କରିବା ଉଚିତ ।

'ହେ ଦାଦା ଭଗବାନ, ହେ ଶ୍ରୀ ସୀମନ୍ଧର ସ୍ୱାମୀ ପ୍ରଭୁ, ମୁଁ ମନ-ବଚନ-କାୟା * ତଥା * ର ନାମର ସର୍ବମାୟା, ଭାବକର୍ମ, ଦ୍ରବ୍ୟକର୍ମ, ନୋକର୍ମ ଆପଣ ପ୍ରକଟ ପରମାତ୍ମ ସ୍ୱରୂପ ପ୍ରଭୁଙ୍କ ସୂଚରଣରେ ସମର୍ପିତ କରୁଛି ।

ହେ ଦାଦା ଭଗବାନ, ହେ ଶ୍ରୀ ସୀମନ୍ଧର ସ୍ୱାମୀ ପ୍ରଭୁ, ମୁଁ ଆପଣଙ୍କ ଅନନ୍ୟ ଶରଣ ନେଉଛି । ମୋତେ ଆପଣଙ୍କ ଅନନ୍ୟ ଶରଣ ମିଳୁ । ଅନ୍ତିମ ଘଡ଼ିରେ ହାଜର ରହିବ । ମୋତେ ଆଙ୍ଗୁଳି ଧରି ମୋକ୍ଷରେ ନେଇଯିବ । ଅନ୍ତ ପର୍ଯ୍ୟନ୍ତ ସାଙ୍ଗରେ ରହିବ ।

ହେ ପ୍ରଭୁ, ମୋତେ ମୋକ୍ଷ ବ୍ୟତୀତ ଏହି ଜଗତର କୌଣସି ବି ବିନାଶୀ ଜିନିଷ ଦରକାର ନାହିଁ । ମୋର ଆସନ୍ତା ଜନ୍ମ ଆପଣଙ୍କ ଚରଣରେ ଏବଂ ଶରଣରେ ହିଁ ହେଉ ।'

**'ଦାଦା ଭଗନାନ ନା ଅସୀମ ଜୟ ଜୟକାର ହୋ'** ଗାଇ ଚାଲିବ ।

* (ଯାହାର ଅନ୍ତିମ ସମୟ ଆସି ଯାଇଥିବ ସେ ବ୍ୟକ୍ତି, ନିଜର ନାମ ନେଉ)

(ଏହିପରି ସେ ବ୍ୟକ୍ତି ବାରଂବାର ବୋଲୁ ଅଥବା କେହି ତା'ପାଖରୁ ବାରଂବାର ବୋଲାଉ ।)

## ମୃତ ବ୍ୟକ୍ତିଙ୍କ ପ୍ରତି ପ୍ରାର୍ଥନା

ଆପଣଙ୍କର କେଉଁ ମୃତ ସ୍ୱଜନ ଅବା ମିତ୍ରଙ୍କ ପାଇଁ ଏହିପରି ପ୍ରାର୍ଥନା କରିବା ଉଚିତ ।

'ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ପ୍ରତ୍ୟକ୍ଷ ସୀମନ୍ଧର ସ୍ୱାମୀଙ୍କ ସାକ୍ଷୀରେ, ଦେହଧାରୀ * ର ମନ-ବଚନ-କାୟାର ଯୋଗ, ଭାବକର୍ମ, ଦ୍ରବ୍ୟକ୍ରମ, ନୋକର୍ମରୁ ଭିନ୍ନ ଏପରି ହେ ଶୁଦ୍ଧାତ୍ମା ଭଗବାନ, ଆପଣ ଏପରି କୃପା କରନ୍ତୁ ଯେ * ଯେଉଁଠି ଥାଉ ସେଠାରେ ସୁଖ-ଶାନ୍ତି ପାଉ, ମୋକ୍ଷ ପାଉ ।

ଆଜି ଦିନର ଅଦ୍ୟକ୍ଷଣ ପର୍ଯ୍ୟନ୍ତ ମୋ ଦ୍ୱାରା * ପ୍ରତି ଯାହା ବି ରାଗ୍-ଦ୍ୱେଷ, କଷାୟ ହୋଇଥିବ, ସେ ସବୁର କ୍ଷମା ମାଗୁଛି । ହୃଦୟପୂର୍ବକ ପଶ୍ଚାତାପ କରୁଛି । ମୋତେ କ୍ଷମା କରନ୍ତୁ ଏବଂ ଆଉ ଏପରି ଦୋଷ କେବେ ବି ନ ହେଉ, ଏପରି ଶକ୍ତି ଦିଅନ୍ତୁ ।

* ମୃତ ବ୍ୟକ୍ତିଙ୍କ ନାମ ନିଅ ।

(ଏହିପରି ବାରମ୍ବାର ପ୍ରାର୍ଥନା କରିବା ଉଚିତ । ପରେ ଯେତେଥର ମୃତ ବ୍ୟକ୍ତି ମନେ ପଡ଼ନ୍ତି, ସେବେ-ସେବେ ଏହି ପ୍ରାର୍ଥନା କରିବା ଉଚିତ । )

## ଶୁଦ୍ଧାତ୍ମାଙ୍କ ପ୍ରତି ପ୍ରାର୍ଥନା

(ପ୍ରତିଦିନ ଥରେ କରନ୍ତୁ)

ହେ ଅନ୍ତର୍ଯ୍ୟାମି ପରମାତ୍ମା ! ଆପଣ ପ୍ରତ୍ୟେକ ଜୀବମାତ୍ରରେ ବିରାଜମାନ ଅଛନ୍ତି, ସେହିପରି ମୋ ଭିତରେ ମଧ୍ୟ ବିରାଜମାନ ଅଛନ୍ତି । ଆପଣଙ୍କ ସ୍ୱରୂପ ହିଁ ମୋ ସ୍ୱରୂପ ଅଟେ । ମୋ ସ୍ୱରୂପ ଶୁଦ୍ଧାତ୍ମା ଅଟେ ।

ହେ ଶୁଦ୍ଧାତ୍ମା ଭଗବାନ ! ମୁଁ ଆପଣଙ୍କୁ ଅଭେଦ ଭାବରେ ଅତ୍ୟନ୍ତ ଭକ୍ତି ପୂର୍ବକ ନମସ୍କାର କରୁଛି ।

ଅଜ୍ଞାନତାବଶ ମୁଁ ଯେଉଁ ଯେଉଁ ** ଦୋଷ କରିଛି, ସେ ସମସ୍ତ ଦୋଷକୁ ଆପଣଙ୍କ ସମ୍ମୁଖରେ ଜାହିର କରୁଛି । ତାହାର ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି ଏବଂ ଆପଣଙ୍କ ଠାରେ କ୍ଷମା-ପ୍ରାର୍ଥନା କରୁଛି । ହେ ପ୍ରଭୁ ! ମୋତେ କ୍ଷମା କରନ୍ତୁ, କ୍ଷମା କରନ୍ତୁ, କ୍ଷମା କରନ୍ତୁ ଏବଂ ପୁଣି କେବେ ଏପରି ଦୋଷ ନ କରେ, ଏପରି ଆପଣ ମୋତେ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

ହେ ଶୁଦ୍ଧାତ୍ମା ଭଗବାନ ! ଆପଣ ଏପରି କୃପା କରନ୍ତୁ ଯେପରି ମୋତେ ଭେଦଭାବ ଛୁଟିଯାଉ ଏବଂ ଅଭେଦ ସ୍ୱରୂପ ପ୍ରାପ୍ତ ହେଉ । ମୁଁ ଆପଣଙ୍କ ସହ ଅଭେଦ ସ୍ୱରୂପରେ ତନ୍ମୟାକାର ରହେ ।

** ଯେଉଁ ଦୋଷ ହୋଇଛି, ସେ ସବୁକୁ ମନରେ ଜାହିର କରନ୍ତୁ ।

## ପ୍ରତିକ୍ରମଣ ବିଧି

ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ଦେହଧାରୀ ......... (ଯାହା ପ୍ରତି ଦୋଷ ହୋଇଥିବ, ସେ ବ୍ୟକ୍ତିର ନାମ)ର ମନ-ବଚନ-କାୟାର ଯୋଗ, ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମରୁ ଭିନ୍ନ, ଏପରି ହେ ଶୁଦ୍ଧାତ୍ମା ଭଗବାନ ! ଆପଣଙ୍କ ସାକ୍ଷୀରେ, ଆଜି ଦିନ ପର୍ଯ୍ୟନ୍ତ ମୋ ଦ୍ୱାରା ଯେଉଁ ଯେଉଁ ** ଦୋଷ ହୋଇଛି, ସେ ସବୁ ପାଇଁ ମୁଁ କ୍ଷମା ମାଗୁଛି, ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି । ମୋତେ କ୍ଷମା କରନ୍ତୁ ଏବଂ ପୁଣି ଏପରି ଦୋଷ କେବେ ମଧ୍ୟ କରିବି ନାହିଁ, ଏପରି ଦୃଢ଼ ନିଶ୍ଚୟ କରୁଛି । ସେଥିପାଇଁ ମୋତେ ପରମ ଶକ୍ତି ଦିଅନ୍ତୁ ।

** କ୍ରୋଧ-ମାନ-ମାୟା-ଲୋଭ, ବିଷୟ-ବିକାର, କଷାୟ ଆଦି ଦ୍ୱାରା ସେହି ବ୍ୟକ୍ତିକୁ ଯାହା ବି ଦୁଃଖ ପହଞ୍ଚାଇ ଥିବ, ସେ ଦୋଷଗୁଡ଼ିକୁ ମନରେ ସ୍ମରଣ କରନ୍ତୁ ।

# <u>ନଅ କଲମ</u>
(ପ୍ରତିଦିନ ତିନିଥର କରନ୍ତୁ)

୧. ହେ ଦାଦା ଭଗବାନ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ(ଆହତ ନ ହୁଏ) ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ।

ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ, ଏପରି ସ୍ୟାଦବାଦ ବାଣୀ, ସ୍ୟାଦବାଦ ବର୍ତ୍ତନ(ବ୍ୟବହାର) ଏବଂ ସ୍ୟାଦବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ।

୨. ହେ ଦାଦା ଭଗବାନ! ମୋତେ, କୌଣସି ବି ଧର୍ମର କିଞ୍ଚିତମାତ୍ର ବି ପ୍ରମାଣ(ମର୍ଯ୍ୟାଦା) ନ ଦୁଭେ, ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ।

ମୋତେ, କୌଣସି ଧର୍ମର କିଞ୍ଚିତମାତ୍ର ବି ପ୍ରମାଣ ନ ଦୁଭାଯାଏ ଏପରି ସ୍ୟାଦବାଦ ବାଣୀ, ସ୍ୟାଦବାଦ ବର୍ତ୍ତନ ଏବଂ ସ୍ୟାଦବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ।

୩. ହେ ଦାଦା ଭଗବାନ! ମୋତେ, କୌଣସି ବି ଦେହଧାରୀ ଉପଦେଶକ ସାଧୁ, ସାଧ୍ୱୀ ଅବା ଆଚାର୍ଯ୍ୟଙ୍କର ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରିବା ପାଇଁ  ପରମ ଶକ୍ତି ଦିଅନ୍ତୁ।

୪. ହେ ଦାଦା ଭଗବାନ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି କିଞ୍ଚିତମାତ୍ର ବି ଅଭାବ, ତିରସ୍କାର କେବେ ବି ନ କରେ, ନ କରାଏ, ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ।

୫. ହେ ଦାଦା ଭଗବାନ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ସହ କେବେ ବି କଠୋର ଭାଷା, ତଂତିଲି ଭାଷା ନ କୁହେ, ନ କୁହାଏ ଅଥବା କହିବା ପାଇଁ ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ।

କେହି କଠୋର ଭାଷା, ତଂତିଲି ଭାଷା କୁହେ ତେବେ ମୋତେ ମୃଦୁ-ଋଜୁ ଭାଷା କହିବା ପାଇଁ ପରମ ଶକ୍ତି ଦିଅନ୍ତୁ।

୬. ହେ ଦାଦା ଭଗବାନ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି ସ୍ତ୍ରୀ, ପୁରୁଷ ଅଥବା ନପୁଂସକ, କୌଣସି ବି ଲିଙ୍ଗଧାରୀ ହେଉ, ତେବେ ତାଙ୍କ ସମ୍ବନ୍ଧରେ କିଞ୍ଚିତମାତ୍ର ବି ବିଷୟ-ବିକାର ସମ୍ବନ୍ଧୀ ଦୋଷ, ଇଚ୍ଛା, ଚେଷ୍ଟା ଅଥବା ବିଚାର ସମ୍ବନ୍ଧୀ ଦୋଷ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ,ଏପରି ପରମ ଶକ୍ତି ଦିଅନ୍ତୁ।

ମୋତେ ନିରନ୍ତର ନିର୍ବିକାର ରହିବା ପାଇଁ ପରମ ଶକ୍ତି ଦିଅନ୍ତୁ।

୭. ହେ ଦାଦା ଭଗବାନ! ମୋତେ, କୌଣସି ବି ରସରେ ଲୁବ୍ଧତା ନ ହେଉ, ଏପରି ଶକ୍ତି ଦିଅନ୍ତୁ ।

ସମରସୀ ଆହାର ନେବା ପାଇଁ ପରମ ଶକ୍ତି ଦିଅନ୍ତୁ।

୮. ହେ ଦାଦା ଭଗବାନ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର ପ୍ରତ୍ୟକ୍ଷ ଅଥବା ପରୋକ୍ଷ, ଜୀବିତ ଅଥବା ମୃତ, କାହାରି କିଞ୍ଚିତମାତ୍ର ବି ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ ଏପରି ପରମ ଶକ୍ତି ଦିଅନ୍ତୁ।

୯. ହେ ଦାଦା ଭଗବାନ! ମୋତେ, ଜଗତ କଲ୍ୟାଣ କରିବାରେ ନିମିତ୍ତ ହେବାପାଇଁ ପରମ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ।

(ଏତିକି ତୁମକୁ ଦାଦା ଭଗବାନଙ୍କ ପାଖରେ ମାଗିବାର ଅଛି। ଏହା ପ୍ରତିଦିନ ଯନ୍ତ୍ରବତ୍ ପଢ଼ିବାର ଜିନିଷ ନୁହେଁ, ହୃଦୟରେ ରଖିବାର ଜିନିଷ ଅଟେ। ଏହା ପ୍ରତିଦିନ ଉପଯୋଗପୂର୍ବକ ଭାବନା କରିବାର ଜିନିଷ ଅଟେ। ଏତିକି ପାଠରେ ସମସ୍ତ ଶାସ୍ତ୍ରର ସାର ଆସିଯାଏ।)

## ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ ଅନୁଗାମୀ ଦରକାର କି ନାହିଁ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା?"

**- ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ'-ଗାଁ', ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନକାଳ ମଧ୍ୟରେ ପୂଜ୍ୟ ଡା. ନୀରୁବେନ ଅମୀନ(ନୀରୁମାଁ)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହ ବିଲୟ ପରେ ନୀରୁମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଇ ଦେଶାଇଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବା ପାଇଁ ସିଦ୍ଧି ପ୍ରଦାନ କରିଥିଲେ । ନୀରୁମାଁଙ୍କ ଉପସ୍ଥିତିରେ ହିଁ ତାଙ୍କର ଆଶୀର୍ବାଦ ଦ୍ୱାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୁମାଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁଅଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ୱ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଗ୍ରନ୍ଥରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ପାଇଁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, କିନ୍ତୁ ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲାଅଛି । ଯେପରି ପ୍ରଜ୍ଜ୍ୱଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ଜ୍ୱଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି ହିଁ ସ୍ୱୟଂର ଆତ୍ମା ଜାଗୃତ ହୋଇପାରେ ।

## दादा भगवान फाउन्डेशन के द्वारा प्रकाशित पुस्तकें

१. ज्ञानी पुरुष की पहचान
२. सर्व दु :खो से मुक्ति
३. कर्म का सिद्धांत
४. आत्मबोध
५. मैं कौन हूँ ?
६.वर्तमान तीर्थकंर श्री सीमंधर स्वामी
७.भुगते उसी की भूल
८. एडजस्ट एवरीव्हेयर
९. टकराव टालिए
१०. हुआ सो न्याय
११. चिंता
१२. क्रोध
१३. प्रतिक्रमण
१४. दादा भगवान कौन ?
१५. पैसों का व्यवहार
१६. अंत : करण का स्वरुप
१७. जगत कर्ता
१८. त्रिमंत्र
१९. भावना से सुधरे जन्मोंजन्म
२०. माता-पिता और बच्चों का व्यवहार
२१. प्रेम
२२. समझ से प्राप्त ब्रह्मचर्य
२३. दान
२४. मानव धर्म
२५. सेवा-परोपकार
२६. मृत्यु समय, पहले और पश्चात
२७. निजदोष दर्शन से...निर्दोष
२८. पति-पत्नि का दिव्य व्यवहार
२९. क्लेश रहित जीवन
३०. गुरु-शिष्य
३१. अहिंसा
३२. सत्य-असत्य के रहस्य
३३. चमत्कार
३४. पाप-पुण्य
३५. वाणी,व्यवहार में...
३६. कर्म का विज्ञान
३७. आप्तवाणी - १ से ९
३८.आप्तवाणी - १३(पूर्वार्ध-उत्तरार्ध)
३९. समझ से प्राप्त ब्रह्मचर्य (पूर्वार्ध-उत्तरार्ध)

- ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ଗୁଜରାଟୀ ଭାଷାରେ ବି ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ **www.dadabhagwan.org** ରେ ମଧ୍ୟ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।
- ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।

**ଓଡ଼ିଆ ପୁସ୍ତକ :**

୧. ଆତ୍ମସାକ୍ଷାତ୍କାର
୨. ଘର୍ଷଣ ଟାଳନ୍ତୁ
୩. ମୁଁ କିଏ ?
୪. ଏଡ଼ଜଷ୍ଟ ଏଭ୍ରିହ୍ୱେୟାର
୫. ଚିନ୍ତା
୬. କ୍ରୋଧ
୭. ମାନବ ଧର୍ମ
୮. ଯାହା ହେଲା ତାହା ନ୍ୟାୟ
୯. ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ
୧୦. ଯିଏ ଭୋଗେ ତା'ର ଭୁଲ
୧୧. ସେବା-ପରୋପକାର

## ପ୍ରାପ୍ତିସ୍ଥାନ

## ଦାଦା ଭଗବାନ ପରିବାର

**ଅଡ଼ାଲଜ** : ତ୍ରିମନ୍ଦିର, ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ, ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-୩୮୨୪୨୧, ଫୋନ-(୦୭୯)୩୯୮୩୦୧୦୦

**ରାଜକୋଟ**: ତ୍ରିମନ୍ଦିର, ଅହମଦାବାଦ-ରାଜକୋଟ ହାଇୱେ, ତରଘଡ଼ିୟା ଚୋକଡ଼ି(ସର୍କଲ), ପୋ-ମାଲିୟାସଣ, ଜିଲ୍ଲା-ରାଜକୋଟ, ଫୋନ-୯୨୭୪୧୧୧୩୯୩

**ଭୁଜ୍** : ତ୍ରିମନ୍ଦିର, ହିଲ୍ ଗାର୍ଡେନ ପଛ,ଏୟାରପୋର୍ଟ ରୋଡ଼, (୦୨୮୩୨) ୨୯୦୧୨୩

**ଗୋଧ୍ରା** : ତ୍ରିମନ୍ଦିର, ଭାମେୟା ଗାଁ, ଏଫ୍‌ସିଆଇ ଗୋଡାଉନ୍ ସାମନା, ଗୋଧ୍ରା ।(ଜି-ପଞ୍ଚମହାଲ) ଫୋନ-(୦୨୬୭୨) ୨୬୨୩୦୦

**ମୋର୍‌ବୀ** : ତ୍ରିମନ୍ଦିର, ମୋରବୀ-ନବଲଖି ହାଇୱେ, ପୋ:ଜୟପୁର, ଜିଲ୍ଲା-ରାଜକୋଟ, ଫୋନ-(୦୨୮୨୨)୨୯୭୦୯୭

**ଅମ୍‌ରେଲୀ** : ତ୍ରିମନ୍ଦିର, ଲିଲିୟା ରୋଡ, ବାଇପାସ ଚୋକଡି, ଖାରାବାଡି, ୯୯୨୪୩୪୪୪୬୦

**ସୁରେନ୍ଦ୍ରନଗର** : ତ୍ରିମନ୍ଦିର, ସୁରେନ୍ଦ୍ରନଗର-ରାଜକୋଟ ହାଇୱେ, ଲୋକ ବିଦ୍ୟାଳୟ ପାଖ, ମୂଳି ରୋଡ, ୯୮୭୯୨୩୨୮୭୭

**ଅହମଦାବାଦ**:ଦାଦା ଦର୍ଶନ, ୫, ମମତାପାର୍କ ସୋସାଇଟୀ, ନବ ଗୁଜରାଟ କଲେଜ ପଛ, ଉସ୍ମାନପୁରା, ଅହମଦାବାଦ-୩୮୦୦୧୪, ଫୋନ-(୦୭୯)୨୭୫୪୦୪୦୮

**ବଡ଼ୋଦରା** : ଦାଦା ମନ୍ଦିର, ୧୭, ମାମା କି ପୋଲ-ମୁହଲ୍ଲା, ରାବପୁରା ପୋଲିସ ଷ୍ଟେସନ ପାଖ, ସଲାଟ ୱାଡ଼ା, ବଡ଼ୋଦରା, ୯୯୨୪୩୪୩୩୩୫

**ମୁମ୍ବାଇ:**୯୩୨୩୫୨୮୯୦୧, **ବାଙ୍ଗାଲୋର:**୯୫୯୦୯୭୯୦୯୯, **କୋଲକତା:**୦୩୩-୩୨୯୩୩୮୮୫, **ଜଲନ୍ଧର:**୯୮୧୪୦୬୩୦୪୩, **ଜୟପୁର:**୯୩୫୧୪୦୮୨୮୫, **ହାଇଦ୍ରାବାଦ:**୯୯୮୯୮୭୭୭୮୬, **ଇନ୍ଦୋର:**୯୮୯୩୫୪୫୩୫୧, **ଅମରାବତୀ:**୯୪୨୨୯୧୫୦୬୪, **ରାୟପୁର:**୯୩୨୯୫୨୩୭୩୭, **ଭିଲାଇ:**୯୮୨୭୪୮୧୩୩୬, **ଦିଲ୍ଲୀ**:୯୮୧୦୦୯୮୫୬୪, **ଭୋପାଲ୍:**୯୪୨୫୦୨୪୪୦୫, **ଚେନ୍ନାଇ:**୯୩୮୦୧୫୯୯୫୭
**ଓଡିଶା:**୮୭୬୩୦୭୩୧୧୧

**www.dadabhagwan.org**
**Email : info@dadabhagwan.org**



ଅନ୍ତିମ ଦିନରେ ଅକ୍ସିଜେନ୍‌ରେ ତଥାପି ମୁକ୍ତ ହାସ୍ୟ...

## ପହଞ୍ଚେ କେବଳ ଭାବର ସ୍ପନ୍ଦନ

ପୁଅ(ଅବା କେହି ବି ସ୍ୱଜନ) ମରିଗଲା ପରେ ତାଙ୍କ ପଛରେ ଚିନ୍ତା କରିବା ଦ୍ୱାରା ତାଙ୍କୁ ଦୁଃଖ ହୋଇଥାଏ । ଆମ ଲୋକେ ଅଜ୍ଞାନତା କାରଣରୁ ଏପରି ସବୁ କରନ୍ତି । ଏଣୁ ତୁମକୁ ଯେମିତିକୁ ସେମିତି ବୁଝି ଶାନ୍ତିପୂର୍ବକ ରହିବା ଉଚିତ । ଅଯଥା ମୁଣ୍ଡ ଖରାପ କରିବା, ତାହାର ଅର୍ଥ କ'ଣ ? ଏମାନେ ତ ସାଂସାରିକ ରଣାନୁବନ୍ଧ ଅଟନ୍ତି, ଦିଆ-ନିଆର ହିସାବ ଅଟନ୍ତି । ଏହି ମୃତ୍ୟୁ ହେବା ମାନେ କ'ଣ ? ଖାତାର ହିସାବ ପୁରା ହେବା । ଏଣୁ ଆମକୁ ଯଦି ସେ ବହୁତ ମନେ ପଡ଼ନ୍ତି ତେବେ କ'ଣ କରିବା ଉଚିତ ? ବୀତରାଗ ଭଗବାନଙ୍କୁ କହିବା ଯେ ତାଙ୍କୁ ଶାନ୍ତି ଦିଅନ୍ତୁ । ଆମେ ଭାବନା କରିବା ତେବେ ସେ ଭାବନା ତାଙ୍କୁ ଅବଶ୍ୟ ପହଞ୍ଚେ !

मूल दीपक से प्रकटे दीपमाला

dadabhagwan.org

ISBN 978-93-87551-37-4

9 789387 551374

Printed in India

Price ₹ 20